# ଅମରଲଡୁ

## (କିଶୋର ଗଳ୍ପ ସଂକଳନ)



ରଚନା : ଡକ୍ଟର କୃତ୍ତିବାସ ନାୟକ

ISBN No. : 978-93-87968-35-6

ଅରୁଣ ତରୁଣ

ଶୈଳଶ୍ରୀ ବିହାର, ଭୁବନେଶ୍ୱର-୨୧

ଫୋନ : ୯୯୩୭୭୪୩୫୦୮

# ଅମରଲଡୁ

(କିଶୋର ଗଳ୍ପ ସଂକଳନ)

*ରଚନା*

**ଡକ୍ଟର କୃତ୍ତିବାସ ନାୟକ**

*ପ୍ରକାଶକ :*

**'ଅରୁଣ ତରୁଣ'**

ଶୈଳଶ୍ରୀ ବିହାର, ଭୁବନେଶ୍ୱର-୨୧

ଫୋନ : ୯୯୩୭୭୪୩୫୦୮

*ପ୍ରଥମ ସଂସ୍କରଣ :* ୨୦୧୭

ଚିତ୍ର : ସନ୍ତୋଷ

*ମୁଦ୍ରଣ :*

ଜଗନ୍ନାଥ ପ୍ରୋସେସ୍ ପ୍ରା. ଲିଃ.,

କଟକ -୨

*ମୂଲ୍ୟ :* ଟ. ୫୦/-

## ଏଥିରେ ଅଛି....



# AMARLADU

(Story Collection)

*Written by :*

**Dr. Krutibas Nayak**

*Published by :*

***Arun Tarun***

Sailashree Vihar,
Bhubaneswar-21

Mob. : 9937743508

*Art :* **Santosh**

*First Edition :* **2017**

*Price :* **Rs. 50.00**

# ଅମରଲଡ୍ଡୁ

ଥରେ ଜଣେ ନେତା ମହାପ୍ରଭୁଙ୍କ ମୁଣ୍ଡରେ ଖିଆଲ ପଶିଲା ଯେ, ସେ ଅମରଲଡ୍ଡୁ ଖାଇ ସବୁଦିନ ପାଇଁ ବଞ୍ଚି ରହିବେ। ଏତେଧନ ସଂପତ୍ତି, କ୍ଷମତା ଥାଉଥାଉ ସେ ତାକୁ ସବୁଛାଡ଼ି କେବେ ବି ଆରପାରିକୁ ଯିବେ ନାହିଁ। ଏହି ପୃଥିବୀରେ ଯେଉଁସବୁ ସୁଖ ଭରିରହିଛି, ଆଉ କେଉଁଠି ଏମିତି ସୁଖ ନ ଥିବ। ଯେତେବେଳେ ଯାହା ଦରକାର, ସବୁ ତ ମୋତେ ଏଇଠି ମିଳିଯାଉଛି। ଚାକର,



ଚାକରାଣୀମାନେ ମୋର ସବୁ କାମ କରିଦେଉଛନ୍ତି । କେତେ ବଡ଼ବଡ଼ ଶିକ୍ଷିତଲୋକମାନେ ଆସି ମୋ ଗେଟ୍‌ପାଖରେ ଠିଆହେଇ ସାର୍ ଘରେ ଅଛନ୍ତ କି ବୋଲି ପଚାରୁଛନ୍ତି । କେତେ ବୁଢ଼ାବୁଢ଼ୀ ମୋ ପାଦଛୁଇଁ ପ୍ରଣାମ କରୁଛନ୍ତି । ପଣ୍ଡିତ ଆଉ ଜ୍ଞାନୀଲୋକମାନେ ମଧ୍ୟ ମୋ କୃପାଭିକ୍ଷା କରୁଛନ୍ତି । ଅନ୍ୟମାନଙ୍କ କଥାକୁ ଆଉ କିଏ ପଚାରେ। ରାତି ପାହିଲେ, କେତେ ଛୋଟ ବଡ଼ ନେତା ମୋତେ ଫୋନ୍‌କରି ଉପଦେଶ ଦିଆନିଆ କରୁଛନ୍ତି । ତେଣୁ ସମାଜରେ ମୋର ଖାତିରି ଯଥେଷ୍ଟ ଅଛି ।



ଧନ ହେଉଛି, ସବୁଠାରୁ ବଡ଼ବଳ। ସେଥିପାଇଁ ମୁଁ ଜୀବନସାରା ଧନ ରୋଜଗାର ପାଇଁ ଦଉଡ଼ିଛି। କେତେକଷ୍ଟ ପାଇଛି, ଅପମାନ ପାଇଛି। ତଥାପି ଧନପିଛା ଛାଡ଼ିନାହିଁ। ଶେଷରେ ଧନ ମୋତେ ଧରାଦେଇଛି। ଅଳ୍ପଟିକେ ଅନ୍ୟାୟ, କିଛି କପଟର ଆଶ୍ରୟ ନେଇଯିବାରୁ ମୋର ସଂପତ୍ତି ଦ୍ୱିତୀୟାଚାନ୍ଦରୁ ପୂର୍ଣ୍ଣିମାଚାନ୍ଦ ପରି ବଢ଼ିଯାଇଛି। ଏବେ ମୁଁ କୋଟିପତି ହେଇଯାଇଛି। ଯେତେବେଳେ ଯାହା ଚାହୁଁଛି, ସେ କାମ କରେଇ ଦେଇପାରୁଛି। କହିବାକୁ ଗଲେ ମୋ ଦୟାରେ ଲକ୍ଷଲକ୍ଷ ଲୋକ ବଞ୍ଚିଛନ୍ତି। ମୁଁ ଚାହିଁଲେ, ସେମାନଙ୍କୁ ମାରିଦେଇପାରେ ନ ହେଲେ ତାରି ବି ଦେଇପାରେ। ମୋର ଅର୍ଥ କ୍ଷମତା ଆଉ ସଂପତ୍ତି ବଳରେ ମୁଁ ଅସମ୍ଭବକୁ ସମ୍ଭବରେ ପରିଣତ କରି ଦେଇପାରୁଛି। କେତେମିଛକୁ ସତରେ ପୁଣି ସତକୁ ମିଛ ବୋଲି ପ୍ରମାଣିତ କରିଦେବାପାଇଁ ମୋର କେତେ ଓକିଲ ଅଛନ୍ତି। ଯେଉଁ କେତୋଟି ଭୁଲକାମ ବା ଅପରାଧୀ କାମ ମୁଁ ଆଗରୁ କରିଥିଲି, ସେସବୁ କଥାକୁ ଲୋକେ ତ କେବେଠାରୁ ଭୁଲି ଯାଇସାରିଲେଣି। ତେଣୁ ସେମାନେ ଥରକୁଥର ଭୋଟଦେଇ ମୋତେ ତାଙ୍କର ନେତାଭାବରେ ବାଛି ଚାଲିଛନ୍ତି। ମୁଁ କେବଳ ମୋ ଧନବଳରେ ବଳିୟାନ ହେଇଛି ସେକଥା ନୁହେଁ, ମୋ ଦଳରେ ଅନେକ କୁଜି ନେତା, ଅକର୍ମା, ଠକ, ଚୋର, ଜମିମାଫିଆ, ଜଙ୍ଗଲମାଫିଆମାନେ ମଧ୍ୟ ମୋ ବଳରେ ବଳିୟାନ ହେଇପାରିଛନ୍ତି। ସେମାନଙ୍କପାଇଁ ମୁଁ ହେଉଛି- ଦ୍ୱିତୀୟ ଭଗବାନ। ମୋ ବିନା ଅନେକଲୋକ ଅସହାୟ ହେଇପଡ଼ିବେ। ପୁଅମାନେ ତ ମୋ ସଂପତ୍ତିକୁ ସୁରକ୍ଷିତ ରଖିବାକୁ ଅଯୋଗ୍ୟ। ସେମାନେ କେବଳ ଖର୍ଚ୍ଚକରିବା ଜାଣନ୍ତି। ଧନବଳ ହେଉଛି ସବୁଠାରୁ ବଡ଼ବଳ, ଏ'କଥାକୁ ସେମାନେ ହେଜି ପାରୁନାହାନ୍ତି। କଳେବଳେ କୌଶଳେ ନିଜକାମକୁ କରେଇନେବା ପାଇଁ ତାଙ୍କର ବୁଦ୍ଧି ନାହିଁ। କେବଳ ମଜା ମଉଜକରି ଟଙ୍କା ପଇସା ଉଡ଼େଇବା ଜାଣନ୍ତି । ଏମିତି ଚାଲିଲେ, ମୋର ଧନବଳ କମିଯିବ। ତେଣୁ ମୁଁ ସବୁଦିନ ପାଇଁ ଏହି ସୁନ୍ଦର ପୃଥିବୀରେ ବଞ୍ଚିରହିବାକୁ ଚାହେ ।

ଏମିତି କେତେକଥା ଭାବିଭାବି ନେତାଜଣକ ତାଙ୍କ ଇଷ୍ଟଦେବୀ ଗ୍ରାମଠାକୁରାଣୀଙ୍କ ପାଖରେ ପହଞ୍ଚି ପ୍ରାର୍ଥନା କଲେ-''ମାଆ ଗୋ, ମା ! ତୁ ମୋତେ ଛୁଞ୍ଚିରୁ ଡାମ୍ଫଣ, ପୁଣି ଡାମ୍ଫଣରୁ ଶାବଳ କରିଦେଇଛୁ। ଖାଇବାକୁ ମୁଠାଏ ପାଉ ନ ଥିଲି। କେତେକଷ୍ଟ ସହିଛି, ସେକଥା ତୋତେ ଜଣା। ତୁ



ଦୟାକରି ମୋ ମୁଣ୍ଡରେ ବୁଦ୍ଧିଦେଲୁ। ସେହି ବୁଦ୍ଧିବଳରେ ମୁଁ କୋଟିପତି ହେଇପାରିଛି। ସହରରେ ଚାରିଟା କୋଠା ତିଆରି କରିଛି। ଜମି କିଣିଛି। ସେ ସବୁ ତୋର ସଂପତ୍ତି। ପୁଣି ତୁ ଦୟାକଲୁ ବୋଲି ମୁଁ ଗାଆଁର ୱାର୍ଡ଼ମେମ୍ବରରୁ ସରପଞ୍ଚ ହେଇଥିଲି। ଏବେ ମୁଁ ଜଣେ ନେତା ହେଇପାରିଛି। କେତେବେଳେ କେଉଁଠୁ ଏତେଟଙ୍କା ମୋ ପାଖକୁ ପଠାଇଦେଲୁ, ମୁଁ ଜାଣି ପାରିଲି ନାହିଁ। ମୋ ଧନବଳରେ କେତେଗୁଡ଼ାଏ ପ୍ରାଣୀ ସୁଖରେ ବଞ୍ଚି ରହିପାରିଛନ୍ତି। ମୋ ଦେହରେ ଆଉ ବଳନାହିଁ। ବୟସ ବଢ଼ିଯାଉଛି। କେତେବେଳେ ଯଦି ମୋର ମୃତ୍ୟୁ ହୋଇଯାଏ, ତେବେ ସେ ସଂପତ୍ତିକୁ ଚୋର, ଚଣ୍ଡାଳମାନେ ଖାଇ ଉଡ଼େଇଦେବେ।

ମାଆ ଲୋ ! ତୋର ଦୟାରୁ ମୋତେ ଅମର କରି ରଖିଥା । ଯଦି ତୋ' ପାଖରେ ଅମରଲଡୁ ଥାଏ, ତେବେ ମୋତେ ଦୟାକରି ସେଇଟାକୁ ଦେଇଦେ । ମୋର ଆଉକିଛି ଲୋଡ଼ାନାହିଁ । ଯଦି ମୁଁ ତୋଠାରୁ ଅମରଲଡୁ ପାଇଯିବି, ତେବେ ତୋର ଏଇ ଛୋଟିଆ ଚଉଁରା ଭଳିଥିବା ମନ୍ଦିରକୁ ମୁଁ ପୁରୀ ଜଗନ୍ନାଥ ମନ୍ଦିର ଭଳି ବଡ଼କରି ତୋଳେଇ ଦେବି । ତୋ'ପାଖରେ ଆଉ କଦଳୀ ଗୁଡ଼, ଛେନାପଣା ଭୋଗ ହେବନାହିଁ । ଦେଖିବୁ ମାଆ, ସବୁଦିନ କେବଳ ଛେନାପୋଡ଼, ରସଗୋଲା ଭୋଗ ତୋ'ପାଖରେ ଲାଗିବ । ତୋ'ମନ୍ଦିର ଉପରେ ଗୋଟାଏ ଷାଠିଏ ହାତ ଲମ୍ବାର ନାଲିପତାକା ଉଡ଼େଇଦେବି । ମୋ ପ୍ରତି ଏତିକି ଦୟାରଖ । ମୋ ପାଇଁ ଗୋଟାଏ ଅମରଲଡୁ ଯୋଗାଡ଼ କର । ତୁ ସବୁଦିନ ମନ୍ଦିରରେ ବସିଥିବୁ । ମୁଁ ଅମରଲଡୁ ଖାଇ ସବୁଦିନ ତୋ'ସେବା କରୁଥିବି ।''

ଗ୍ରାମଦେବତୀଙ୍କ ପାଖରେ ହାତଯୋଡ଼ି ନିଜର ମନକଥା ଜଣାଉଥିବାବେଳେ ନେତାଙ୍କ ପାଖରେ ଠିଆହେଇଥିବା ବୁଢ଼ାପୂଜାରୀ ଜଣକ ସବୁକଥା ଶୁଣିପାରି କହିଲା-"ନେତା ମହାପ୍ରଭୁ ! ଆପଣ ଅମରଲଡୁ ପାଇଁ ମାଆଙ୍କ ପାଖରେ ପ୍ରାର୍ଥନା କଲେ, କିଛି ଲାଭନାହିଁ । ଏ'ଠାକୁରାଣୀ ଛେନାପଣା, ଧୂପଦୀପ ପାଇଁ ତ ଆମ ଉପରେ ନିର୍ଭର କରନ୍ତି । ସେ ନିଜପାଇଁ ତ ସେ ନିଜେ ଭଲ ଆସ୍ଥାନଟିଏ ତିଆରି କରିପାରୁନାହାନ୍ତି । ସେ ପୁଣି ଅମରଲଡୁ କେଉଁଠୁ ଆଣିବେ ଯେ, ଆପଣଙ୍କୁ ଦେବେ ? ଆମ ଠାକୁରାଣୀ ବିପଦ ଆପଦରୁ ଆମକୁ ରକ୍ଷାକରନ୍ତି । ଯିଏ ଯେଉଁ କାମ କରିବାକୁ ଚେଷ୍ଟାକରେ, ତାକୁ ସେହିକାମରେ ସାହାଯ୍ୟ କରନ୍ତି । କିନ୍ତୁ ଅମରଲଡୁ ଦେବାକୁ ଆମ ମାଆଙ୍କର ଶକ୍ତିନାହିଁ । ଏଥିପାଇଁ ଆପଣଙ୍କୁ ଜଣେବାବାଙ୍କ ପାଖକୁ ଯିବାକୁ ପଡ଼ିବ ।

ପୂଜାରୀଙ୍କ କଥାଶୁଣି ନେତାଜଣକ ବୋକା ପାଲଟିଗଲେ । ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ସେ ମନେମନେ ଭାବିଲେ, ସତରେ ଏଇ ଠାକୁରାଣୀଙ୍କ ପାଖରେ ଅମରଲଡୁ ଥିଲେ ତ ସିଏ ଆଗରୁ କାହାକୁ ଦେଇସାରନ୍ତେଣି । ପୂଜାରୀବୁଢ଼ା ନିଜେ ଆଗରୁ ନେଇ ତାକୁ ଖାଇ ଅମର ହେଇସାରନ୍ତାଣି । ପୂଜାରୀବୁଢ଼ା ଠିକ୍‌କଥା କହୁଛି । ଆଜିକାଲି ଠାକୁର ଠାକୁରାଣୀମାନେ ଆମଭଳି ଭକ୍ତଙ୍କର କଥାକୁ ମୋଟେ ଶୁଣୁନାହାନ୍ତି । ବରଂ ଜୀବନ୍ତ ବାବାମାନେ ହିଁ ଅମରଲଡୁ ଦେଇପାରିବେ । ସେମାନେ ତାଙ୍କ ହାତମୁଠାରୁ ବିଭୂତି ବାହାର କରିପାରୁଛନ୍ତି । ତାଙ୍କ ପାଦରୁ ମହୁ ଝରୁଛି । ସିମେଣ୍ଟ ତିଆରି ଗାଈଠାରୁ

ଦୁଧ ଦୁହିଁ ପାରୁଛନ୍ତି। ଶୂନ୍ୟରୁ ରସଗୋଲା ଆଣି ଭକ୍ତହାତରେ ଦେଇପାରୁଛନ୍ତି। ପୁଣି ମଲା ମଣିଷକୁ ଜୀବନ ଦେଇପାରୁଛନ୍ତି ବୋଲି ଲୋକେ କୁହାକୁହି ହେଉଛନ୍ତି। ସେଇଭଳି ଜଣେବାବାଙ୍କ ସହିତ ଭେଟହେଲେ, ତାଙ୍କୁ ପୂଜାଏ ଟଙ୍କା ଦେଇ ତାଙ୍କଠାରୁ ଅମରଲଡୁଟିଏ କିଣି ଆଣିବି। ତାକୁ ଖାଇ ମୁଁ ସବୁଦିନ ପାଇଁ ଅମରହେଇ ରହିପାରିବି।

କିଛି ସମୟ ପରେ ନେତା ମହାପ୍ରଭୁ ପୂଜାରୀବୁଢ଼ାକୁ ନିରୋଳା ଜାଗାକୁ ଡାକିନେଇ ପଚାରିଲେ, "ଅମରଲଡୁ ଦେଇ ପାରୁଥିବା ବାବାଙ୍କ ସହିତ ତମର ପରିଚୟ ଅଛି କି ? ଯଦି ତମେ ମୋତେ ସେଇ ବାବାଙ୍କ ସହିତ ଟିକେ ଭେଟକରେଇ ଦେବ, ତାହେଲେ ମୁଁ ତମର ମନଖୁସି କରେଇଦେବି।"

ପୂଜାରୀବୁଢ଼ା କହିଲା,"ଏଇ ଗୋଟାଏ କଥା ! ମୁଁ ପରା ସେ ବାବାଙ୍କର ପରମଭକ୍ତ । ମୋ ପାଇଁ ତାଙ୍କ ଦୁଆର ସବୁବେଳେ ଖୋଲା; କିନ୍ତୁ ଆପଣଙ୍କୁ ସେଠାକୁ ଯିବାକୁ ହେଲେ, ଆଗ ପାଞ୍ଚହଜାର ଟଙ୍କା ବାବାଙ୍କ ପାଦୁକାଦର୍ଶନୀ ଦେବାକୁ ପଡ଼ିବ। ତା'ପରେ ବାବା ଦିନ, ବାର ଓ ସମୟ ଠିକକରି ଆପଣଙ୍କୁ ଆଶ୍ରମକୁ ଡକେଇବେ। ତମେ ତାଙ୍କ ସହିତ ମିଶି କଥାବାର୍ତ୍ତା ହେବ। ସେତିକିବେଳେ ସୁବିଧା ଦେଖି ଆପଣ ତାଙ୍କଠାରୁ ଅମରଲଡୁ ମାଗିଦେବେ ।"

ପୂଜାରୀବୁଢ଼ାର କଥାଶୁଣି ନେତା ମହାପ୍ରଭୁ ଚିନ୍ତାରେ ପଡ଼ିଗଲେ। ବାବାଙ୍କୁ ଦେଖାହେବା ଆଗରୁ ପାଞ୍ଚହଜାର ଟଙ୍କା ଦେବାକୁ ପଡ଼ିବ, ଏ'କଥା ଭାବିଲାବେଳକୁ ତାଙ୍କ ଦେହରୁ ଝାଳ ବାହାରି ପଡ଼ିଲା। ତଥାପି ତାଙ୍କର ଅମର ହେବାକୁ ପ୍ରବଳ ଇଚ୍ଛାଥିବାରୁ ସେ ପୂଜାରୀବୁଢ଼ାକୁ କହିଲେ-"ପୂଜାରୀ ନନା ! ଆପଣ ତ ବାବାଙ୍କ ପାଖକୁ ଯିବା ଆସିବା କରନ୍ତି, ମୋ ମନକଥା ତମେ ତାଙ୍କୁ କହି ତାଙ୍କଠାରୁ ଅମରଲଡୁଟିଏ ମାଗି ଆଣିଲେ ହୁଅନ୍ତା ନାହିଁ ? ଅଯଥାରେ କାହିଁକି ପାଞ୍ଚହଜାର ଟଙ୍କା ଦର୍ଶନୀ ଦେବି ?"

ପୂଜାରୀବୁଢ଼ା କହିଲା-"ଦେଖନ୍ତୁ ଆଜ୍ଞା ! ଅନ୍ୟ ଜଣକ ପାଇଁ ବାବା କେବେ କାହାରିକୁ କିଛି ଦିଅନ୍ତି ନାହିଁ। ଆପଣ ଯଦି ଦର୍ଶନୀ ନ ଦେଇ ଦେଖା କରିବାକୁ ଚାହାନ୍ତି, ତେବେ ଆଉ ଗୋଟାଏ ଉପାୟ ଅଛି।"

"-ହଁ, ହଁ, ସେଇ ଉପାୟଟା ମୋତେ ବତେଇ ଦିଅ। ମୁଁ ଯାଇ ବାବାଙ୍କ ଗୋଡ଼ହାତ ଧରିବାକୁ ମଧ୍ୟ ପ୍ରସ୍ତୁତ ଅଛି।''

ତରବରହେଇ ନେତା ମହାପ୍ରଭୁ କହିପକାଇଲେ।

ପୂଜାରୀବୁଢ଼ା କହିଲା-"ଆପଣ ଆଗାମୀ ଗୁରୁବାରଦିନ କିଛି ଖାଇବା ଜିନିଷ ଚୁଡ଼ା, ମୁଢ଼ି ଧରି ମୋ ସହିତ ବାହାରି ପଡ଼ନ୍ତୁ। ମୁଁ ବାବାଙ୍କର ନିଜଲୋକ ସହିତ ଦେଖା କରେଇଦେବି। ସେ ଯେମିତି କହିବେ, ସେହିପରି କାମ କରିବେ। ତା'ପରେ ଆପଣ ବାବାଙ୍କର ଜଣେ ଶିଷ୍ୟ ହେଇଯିବେ। ତାଙ୍କ ଆଶ୍ରମରେ ରହି କିଛିଦିନ ବାବାଙ୍କର ସେବା କରିବେ। ସୁବିଧା ଦେଖି ଆପଣ ବାବାଙ୍କଠାରୁ ଅମରଲଡୁ ମାଗିନେବେ।"



ଏଥରକ ପୂଜାରୀବୁଢ଼ାର କଥା ନେତାଙ୍କ ମନକୁ ପାଇଲା। ତାଙ୍କ କହିବା ଅନୁସାରେ ଦୁହେଁ ଯାଇ ଜଣେ ବାବାଙ୍କ ଆଶ୍ରମରେ ପହଞ୍ଚିଲେ। ସେଠାରେ ନେତାଙ୍କୁ ତ କେହି ଚିହ୍ନନ୍ତି ନାହିଁ। ତାଙ୍କ ବିଷୟରେ କିମ୍ବା ତାଙ୍କ ଧନ, ସଂପତ୍ତି ବିଷୟରେ ବି କେହି ଜାଣି ନ ଥା'ନ୍ତି। ତେଣୁ ବାବାଙ୍କର ଜଣେଚେଲା ନେତାଙ୍କୁ ଦୀକ୍ଷା ଦେଇସାରି ଆଗ ଭକ୍ତମାନଙ୍କର ଅଇଁଠା ବାସନ ମାଜିବା, ପାଇଖାନା ସଫାକରିବା କାମ କରିବାକୁ କହିଲେ। ଚେଲାଙ୍କର କଥାଶୁଣି ନେତାଙ୍କର ମୁଣ୍ଡ ବୁଲେଇଦେଲା। ସେ ଭାବିଲେ, ବରଂ ପାଞ୍ଚହଜାର ଟଙ୍କା ଦର୍ଶନୀଦେଇ ବାବାଙ୍କଠାରୁ ଅମୃତଲଡ୍ଡୁଟି ନେଇଯାଇଥିଲେ, ଭଲ ହେଇଥା'ନ୍ତା। ଏ'ସବୁ କାମ କରିବ କିଏ ? ନାଇଁ ଏ'ସବୁ କାମ ମୋଦ୍ୱାରା ହେଇପାରିବ ନାହିଁ। କିନ୍ତୁ ମୋ ସଂପତ୍ତିକୁ ରକ୍ଷାକରିବା ପାଇଁ ମୋତେ ଅମରଲଡ୍ଡୁ ଖାଇବାକୁ ପଡ଼ିବ। ପାଞ୍ଚହଜାର ଟଙ୍କାରେ ଯଦି ଅମର ରହି ପାରିବି, ତେବେ ଗଲେ ଯାଉ ପାଞ୍ଚହଜାର। ଏକଥା ଭାବି ସେ ଆଶ୍ରମରେ ବାବାଙ୍କ ଦର୍ଶନୀ ବାବଦକୁ ପାଞ୍ଚହଜାର ଟଙ୍କା ବାହାରକରି ପୂଜାରୀବୁଢ଼ା ହାତରେ ଧରେଇ ଦେଲେ।

ପୂଜାରୀବୁଢ଼ା ସେ ଟଙ୍କାକୁ ନେଇ କାହାକୁ କେତେ ଦେଲା କେଜାଣି, ନେତାଙ୍କୁ ଦର୍ଶନ କରିବାକୁ ଦୁଇମାସ ଯାଏ ନିମନ୍ତ୍ରଣ ଆସିଲା ନାହିଁ।

ଦିନେ ସେ ପୂଜାରୀବୁଢ଼ାକୁ ସାଙ୍ଗରେ ନେଇ ବାବାଙ୍କ ଆଶ୍ରମରେ ପହଞ୍ଚିଲେ, ବାବାଙ୍କ ସହିତ ଭେଟିବାକୁ ଜିଦ୍ କଲେ। ବାବାଙ୍କ ଚେଲା କହିଲେ-"ଆପଣ ସେଦିନ ଯେଉଁ ଟଙ୍କାଦେଇ ଯାଇଥିଲେ, ସେଇଟା ଥିଲା, ପାଦୁକାଦର୍ଶନୀ ଖର୍ଚ୍ଚ। ଏଥର ବାବାଙ୍କୁ ସାକ୍ଷାତ କରିବାପାଇଁ ଅଲଗା ଦଶହଜାର ଟଙ୍କା ଜମା ଦେବାକୁ ପଡ଼ିବ। ନ ହେଲେ ଆପଣ ବାହାରେ ରଖାଯାଇଥିବା ବାବାଙ୍କ ପାଦୁକାଦର୍ଶନ କରିଯାଇପାରିବେ।

ନେତା ମହାପ୍ରଭୁଙ୍କୁ ତ ଅମରହେବା ନିଶା ଘାରିଛି, ଦଶହଜାର ଟଙ୍କା ପୁଣି ଜମାକରିବାକୁ ପଡ଼ିବ। ଆଗରୁ ତ ପାଞ୍ଚହଜାର ଯାଇସାରିଲାଣି। ତାକୁ କେବେ ବି ଫେରାଇ ଆଣିହେବ ନାହିଁ। ଏଥର ସେ ଅଧିକ ଅଡୁଆରେ ପଡ଼ିଗଲେ। ଯାହା ହେବାର ଥିଲା, ସେକଥା ତ ହେଇସାରିଲାଣି। ଅଧିକ ସେ ବିଷୟରେ ଭାବି ଲାଭନାହିଁ। ଦଶହଜାର ଟଙ୍କା ଗଲେ ଯାଉ, ଅମରଲଡ୍ଡୁଟା ମିଳିଗଲେ ଗଲା।



ଶେଷରେ ନେତା ମହାପ୍ରଭୁ ଦଶହଜାର ଟଙ୍କା ବାବାଙ୍କ ଦର୍ଶନୀ ବାବଦକୁ ଜମା କରିଦେଲେ। ସଂଗେସଂଗେ ତାଙ୍କୁ ବାବାଙ୍କ ସହିତ ସାକ୍ଷାତ କରିବାକୁ ସୁଯୋଗେ ବି ମିଳିଗଲା।

ବାବା ତାଙ୍କୁ କହିଲେ-"ତୁମଭଳି ଜଣେ ଧନୀ-ମାନୀଲୋକଙ୍କୁ ଭକ୍ତଭାବରେ ପାଇ ମୁଁ ବହୁତ ଖୁସିହେଲି । ଏଣିକି ତମେ ପ୍ରତିଦିନ ଆଶ୍ରମକୁ ଆସି ପ୍ରାର୍ଥନା କରିବ। ଅଧିକରୁ ଅଧିକ

ଲୋକଙ୍କୁ ବୁଝେଇ ଭକ୍ତ କରିବ। ମୋ ମନକୁ ବୁଝି ଯାହା ଦେବାର ଅଛି, ତାକୁ ଯୋଗାଡ଼ କରିଦେବ। ତେବେଯାଇ ତମେ ମୁକ୍ତି ପାଇବ। ତୁମର କଲ୍ୟାଣ ହେବ।"

ବାବାଙ୍କ କଥା ଶୁଣିସାରି ନେତା ମହାପ୍ରଭୁ କହିଲେ-"ବାବା ! ମୋର ସଂପତ୍ତିକୁ ରକ୍ଷାକରିବା ପାଇଁ ମୁଁ ଅମରହେଇ ବଞ୍ଚିବାକୁ ଚାହେଁ। ଆପଣ ମୋତେ ଗୋଟିଏ ଅମରଲଡ୍ଡୁ ଖାଇବାକୁ ଦିଅନ୍ତୁ। ମୋର ମୁକ୍ତି ଲୋଡ଼ାନାହିଁ କିମ୍ବା ଆଉ କିଛି ଦରକାର ନାହିଁ। ମୁଁ ଆଶ୍ରମକୁ ଆସି ଏତେ କାମ କରିପାରିବି ନାହିଁ। ଦୟାକରି କେବଳ ଅମୃତଲଡ୍ଡୁଟିଏ ଶୂନ୍ୟରୁ ଆଣି ମୋ ହାତରେ ଧରେଇ ଦିଅନ୍ତୁ। ମୁଁ ଆପଣଙ୍କୁ ଦର୍ଶନୀ ବାବଦରେ ପନ୍ଦର ହଜାର ଟଙ୍କା ଦେଇସାରିଲିଣି। ଆଉ ଡେରି କରନ୍ତୁ ନାହିଁ। ଅମରଲଡ୍ଡୁଟିଏ ଦେଇଦିଅନ୍ତୁ ବାବା।''

ନେତା ମହାପ୍ରଭୁଙ୍କ କଥାଶୁଣି ବାବା ରାଗରେ ଜରଜର ହୋଇଗଲେ। ସେ କହିଲେ- "ଆରେ ମୂର୍ଖ ଭକ୍ତ ! ଅମରଲଡ୍ଡୁ କ'ଣ ପନ୍ଦର ହଜାର ଟଙ୍କାରେ ମିଳେ ? ଏଥିପାଇଁ ଦୁଇବର୍ଷ ପର୍ଯ୍ୟନ୍ତ ପ୍ରତିଦିନ ତୋତେ ପନ୍ଦର ହଜାର ଟଙ୍କା ଲେଖାଏଁ ଜମା କରିବାକୁ ପଡ଼ିବ। ତେବେ ଯାଇ ମୁଁ ସ୍ୱର୍ଗରୁ ଅମରଲଡ୍ଡୁ ଆଣି ତୋତେ ଦେଇପାରିବି।"

ବାବାଙ୍କ କଥାଶୁଣି ନେତାଙ୍କ ଚେତା ବୁଡ଼ିଗଲା ଭଳି ଲାଗିଲା। ମିଛରେ ଏତେଗୁଡ଼ାଏ ଟଙ୍କା ପାଣିରେ ପଡ଼ିଗଲା। ନାଇଁ , ନାଇଁ ପ୍ରତିଦିନ ମୁଁ ଏତେଟଙ୍କା ଜମା ଦେଇପାରିବି ନାହିଁ। ବରଂ ଅନ୍ୟ କିଛି ଗୋଟାଏ ନୂଆ ଉପାୟରେ ସେ ଆମରଲଡ୍ଡୁ ଯୋଗାଡ଼ କରିବି। ମନଦୁଃଖ କରି ସେ ଘରକୁ ଫେରିବା ବାଟରେ ଜଣେ ପରିଚିତ ପଣ୍ଡିତଙ୍କୁ ଭେଟିଲେ, କହୁକହୁ ସବୁ ସତକଥା ତାଙ୍କୁ କହିଦେଲେ।

ପଣ୍ଡିତେ ତାଙ୍କ କଥାଶୁଣି ହସିହସି ବେଦମ ହେଇଗଲେ। ତାପରେ ନେତାଙ୍କ ଶୁଖିଲା ମୁହଁକୁ ଦେଖି କହିଲେ-"ଏହି ସଂସାରରେ ଆଜିଯାଏ କେହି ଅମରଲଡ୍ଡୁ ଖାଇନାହାନ୍ତି କି ଅମରହେଇ ରହିନାହାନ୍ତି। ଯିଏ ଜନ୍ମ ନେଇଛି, ସେ ମୃତ୍ୟୁବରଣ କରିଛି। ତେଣୁ ମିଛରେ କାହିଁକି ସେ ଅମରଲଡ୍ଡୁ ପଛରେ ପଡ଼ିଛ। ଅମରଲଡ୍ଡୁ ବୋଲି କିଛିନାହିଁ। ଏ'ସବୁ ମିଛକଥା। ନିରୀହଲୋକଙ୍କୁ ବୋକା ବନେଇବା କଥା। ଅମରଲଡ୍ଡୁ ନାମରେ କେତେକ ଠକ, ବଦମାସ ଆଉ ଭଣ୍ଡବାବା ସରଳବିଶ୍ୱାସୀ

ଭକ୍ତଙ୍କ ଧନ ସହିତ ମାନ-ମହତକୁ ଲୁଟପାଟ କରନ୍ତି । ଆପଣ ଯଦି ମୋତେ ବିଶ୍ୱାସ କରୁଛନ୍ତି, ମୋ ଉପରେ ଭରସା ରଖିଛନ୍ତି, ତେବେ ମୁଁ ଆପଣଙ୍କୁ ଅମର ହେବାର ଅସଲ ଉପାୟ ବତେଇ ଦେଇପାରିବି ।''

ନେତା ମହାପ୍ରଭୁଙ୍କୁ ତ ଅମର ହେବାର ନିଶା ଲାଗିରହିଛି । ଯେକୌଣସି ଉପାୟରେ ସେ ଅମରହେଇ ସବୁଦିନ ପାଇଁ ବଞ୍ଚିରହିବାକୁ ଚାହାନ୍ତି । ତେଣୁ ବିକଳହେଇ ପଣ୍ଡିତଙ୍କୁ ପ୍ରଶଂସାକରି କହିଲେ-"ଆଜ୍ଞା ! ପଣ୍ଡିତ ମହାଶୟ ! ଆପଣ ହେଉଛନ୍ତି-ଆମ ଅଞ୍ଚଳର ସବୁଠୁଁ ଗୁଣୀ, ଜ୍ଞାନୀ ଆଉ



ମାନୀଲୋକ। ଆମର ବାପା-ଗୋସବାପା ଅମଳରୁ ଆପଣଙ୍କୁ ଆମେ ମାନିଆସିଛୁ। ସବୁ ପ୍ରକାରର ସୁଖ-ଦୁଃଖରେ ଆପଣ ଆମର ସାଥୀହେଇ ଆସିଛନ୍ତି। ଆପଣଙ୍କ ଆଶୀର୍ବାଦରୁ ମୁଁ ଆଜି ନେତା ହେଇପାରିଛି। ଆପଣ ତ ତ୍ରିକାଳଦର୍ଶୀ। ମୋର ଅତୀତ, ଭବିଷ୍ୟତ ଏବଂ ବର୍ତ୍ତମାନକୁ ଆପଣ ଗଣନା କରି ଜାଣିପାରନ୍ତି। ଆମେ ଆପଣଙ୍କୁ ବିଶ୍ୱାସ କରିବୁ ନାହିଁ ତ ଆଉ କାହାକୁ ଭରସା କରିବୁ ? ଆପଣ ଦୟାକରି ମୋତେ କହିଦିଅନ୍ତୁ। ମୁଁ କେମିତି ଅମରହେଇ ସବୁଦିନ ପାଇଁ ଏଇ ସଂସାରରେ ବଞ୍ଚିରହିପାରିବି ? ଏଥିପାଇଁ ଯାହା ଦରକାର ମୁଁ ସବୁ କରିବାକୁ ପ୍ରସ୍ତୁତ ଅଛି।''

ନେତାମହାପ୍ରଭୁଙ୍କ କଥାଶୁଣି ପଣ୍ଡିତ ମହାଶୟ ଖୁସିହେଇଗଲେ। ସେ କିଛିସମୟ ଆଖିବୁଜି ପୁଣି କହିଲେ-“ନେତା ମହାଶୟ ! ଆପଣ ହେଉଛନ୍ତି ଆମର ଜଜମାନ। ଆମେ ଆପଣଙ୍କୁ ଉଚିତ ବାଟ ଦେଖାଇ ସତ୍‌ପଥରେ ନେବାକୁ ଚାହିବୁ। ସେ ବାଟଟି କଣ୍ଟକମୟ ହୋଇପାରେ। ପୀଡ଼ାଦାୟକ ବି ହୋଇପାରେ। ସିଦ୍ଧି ପାଇବାକୁ ତ ସାଧନା ଦରକାର। ଧୈର୍ଯ୍ୟ ଦରକାର। ପୁଣି ସେ ସାଧନାରେ ନିଷ୍ଠା ବି ଦରକାର। ଆପଣ ଯଦି ସତରେ ଅମର ହେବାକୁ ଚାହାନ୍ତି, ତେବେ ଆପଣଙ୍କୁ ବହୁତ କିଛି ତ୍ୟାଗ କରିବାକୁ ପଡ଼ିବ। କୌଣସି ପ୍ରକାର ପ୍ରାପ୍ତିର ଲାଳସା ରହିବ ନାହିଁ। ତ୍ୟାଗ ହେଉଛି, ଅମରତ୍ୱର ଲକ୍ଷଣ। ଏଥିପାଇଁ ଧନ, ଜନ, ମାନ ଏବଂ ସମୟକୁ ହରେଇବାକୁ ପଡ଼ିପାରେ; କିନ୍ତୁ ମୁଁ ଭରସା ଦେଇ କହିପାରିବି ଯେ, ମଣଷର ଜୀବନଟା ସିନା ଏହି ସଂସାର ଛାଡ଼ି ଚାଲିଯିବ, କିନ୍ତୁ ଏଇ ତ୍ୟାଗ ଏବଂ ନିଷ୍ଠା ଫଳରେ ସେ ଚିରଦିନ ପାଇଁ ଅମରହେଇ ରହିଯିବ।”

ପଣ୍ଡିତଙ୍କ ମୁହଁକୁ ଚାହିଁ ନେତାମହାପ୍ରଭୁ ପାଟି ବନ୍ଦକରି ଠିଆହେଇ ରହିଥିଲେ। ଏଥର ପାଟି ଖୋଲି କହିଲେ-“ଇଏ କି'କଥା କହୁଛନ୍ତି ପଣ୍ଡିତେ ! ମଣିଷର ଜୀବନ ତ ନ ଥିବ, ସେ ପୁଣି ଅମରହେଇ ରହିବ କେମିତି ? ଏହି କଥାଟାକୁ ଟିକେ ସରଳଭାବରେ ମୋତେ ବୁଝେଇଦେଲେ ହୁଅନ୍ତା ନାହିଁ। ମୁଁ ଆପଣଙ୍କୁ ଭରସା କରିଛି, ଆପଣଙ୍କୁ ଖୁସି କରେଇଦେବା ଭଳି ଧନ ଦେବାକୁ ମଧ୍ୟ ପ୍ରସ୍ତୁତ ଅଛି। ଆପଣ କେବଳ ମୋତେ କହି ଦିଅନ୍ତୁ, ମୁଁ କେମିତି ଅମରହେଇ ରହିପାରିବି।''

“-ଏତେ ବ୍ୟସ୍ତହେଲେ ଚଳିବନାହିଁ। ଅମରହେଇ ରହିବା ଏତେ ସହଜକାମ ନୁହେଁ। ଟଙ୍କା-ପଇସା, ଧନରତ୍ନ ନେଇ କେହି କାହାରି ଆୟୁଷକୁ ବଢ଼େଇ ଦେଇପାରେ ନାହିଁ। ଏଥିପାଇଁ



ବହୁ କଷ୍ଟ, ସାଧନା ଓ ଧୈର୍ଯ୍ୟ ଦରକାର। ଯେଉଁକାମ ଯେତେସହଜରେ ହେଇଯାଏ, ସେ କାମଟି ସେତେ ଶୀଘ୍ର ନଷ୍ଟ ବି ହେଇଯାଇଥାଏ। ଏହା ହେଉଛି, ପ୍ରକୃତିର ନିୟମ। ସେହିପରି ବହୁତ କଷ୍ଟ ଏବଂ ଦୀର୍ଘଦିନର କଠୋର ସାଧନାଦ୍ୱାରା ଯେଉଁକାମ କରାଯାଇଥାଏ, ତାହା ସେତେ ଦୀର୍ଘସ୍ଥାୟୀ ହେଇ ରହିଯାଏ। ଠିକ୍ ସେହିପରି ତ୍ୟାଗ ଓ ପ୍ରେମ ମାଧ୍ୟମରେ ଜଣେଜଣେ ମଣିଷ ଅନେକ ଦିନପର୍ଯ୍ୟନ୍ତ ସମାଜରେ ପୂଜା ପାଇଥାଆନ୍ତି। ତାଙ୍କୁ ଲୋକେ ଅମର ହେଇଗଲେ

ବୋଲି କହିଥା'ନ୍ତି। ମୋ ଜାଣିବାରେ ଦୁଇଟି ଗୋଷ୍ଠୀର ଲୋକ ସହଜରେ ଅମରହେଇ ସବୁଦିନପାଇଁ ଲୋକଙ୍କ ଗହଣରେ ରହିଯାଆନ୍ତି। ଯେମିତି କି ଦେଶପାଇଁ ଲଢ଼େଇକରି ସୈନିକମାନେ ସହିଦ ହେଇଯାଆନ୍ତି। ସେମାନେ ଲୋକଙ୍କ ଜୀବନ ରକ୍ଷାକରିବା ପାଇଁ ପ୍ରାଣବଳୀ ଦେଇଥାଆନ୍ତି। ଶତ୍ରୁସଂଗେ ସାହସର ସହିତ ଯୁଦ୍ଧ କରିଥାଆନ୍ତି। ତେଣୁ ସେମାନେ ଅମରହେଇ ଯୁଗଯୁଗ ପାଇଁ ସମାଜରେ ପୂଜା ପାଆନ୍ତି।"

ପଣ୍ଡିତଙ୍କ ତୁଣ୍ଡରୁ କଥା ନ ସରୁଣୁ ନେତା ମହାପ୍ରଭୁ ପୁଣି ବ୍ୟସ୍ତହେଇ କହିଲେ-"ଆଜ୍ଞା, ପଣ୍ଡିତ ମହାଶୟ! ଆପଣ ସେ ଜୀବନ ଯିବାକଥା କହନ୍ତୁ ନାହିଁ। ମୁଁ ମୋର ଏଇ ଶରୀରକୁ ଧରି ଏଇଗାଆଁର ଏଇଘରେ ବଞ୍ଚିବାକୁ ଚାହେଁ। ତା'ର ଅନ୍ୟକିଛି ଗୋଟାଏ ଉପାୟ ବାହାର କରନ୍ତୁ।"

"-ମୁଁ କହିଥିଲି, ଦୁଇଟି ଗୋଷ୍ଠୀର ଲୋକ ଏଇ ସଂସାରରେ ଅମରହେଇ ରହିପାରନ୍ତି। ତେବେ ଆପଣ ପ୍ରଥମ ଗୋଷ୍ଠୀ ସହିଦଙ୍କ ଭଳି ଜୀବନଦେଇ ଅମରହେବାକୁ ଚାହାନ୍ତି ନାହିଁ। ଠିକ୍‌ଅଛି- ଆଉ ଗୋଟିଏ ଗୋଷ୍ଠୀ ଅଛନ୍ତି, ସେମାନେ ବଞ୍ଚିରହି ମଧ୍ୟ ଅମର ହେଇପାରନ୍ତି; କିନ୍ତୁ ଗୋଟାଏ କଥା, ସବୁର ମୂଳ ସେହି ତ୍ୟାଗ ଆଉ ନିଷ୍ଠା। ଏବେ ତ ଆପଣଙ୍କର ବଳବୟସ ଖସିଆସିଲାଣି; ତଥାପି ଚେଷ୍ଟାକଲେ ହେଇପାରିବ।"

ଜୀବନଧରି ଅମରହେଇ ରହିପାରିବା କଥାଶୁଣି ନେତା ମହାପ୍ରଭୁ ଚମକିପଡ଼ି ପଣ୍ଡିତଙ୍କ ଆଡ଼କୁ ମାଡ଼ିଯାଇ କୁଣ୍ଢେଇ ପକେଇ କହିଲେ- "ପଣ୍ଡିତେ! ହଁ, ମୋତେ ସେଇକଥାଟା କୁହନ୍ତୁ। ମୁଁ ଯେମିତିହେଲେ ଅମରହେଇ ସବୁଦିନ ପାଇଁ ବଞ୍ଚିରହିବାକୁ ଚାହେ।"

"-ଅନ୍ୟଗୋଷ୍ଠୀର ଲୋକ ଯିଏ ଅମରହେଇ ରହନ୍ତି। ସେମାନେ ହେଲେ,କଳା-ସାହିତ୍ୟ ସଂସ୍କୃତିର ପୂଜାରୀ। ଯେମିତି ଦେଖନ୍ତୁ- ନାଟକରେ ବୈଷ୍ଣବ ପାଣି, ସାହିତ୍ୟରେ ଫକୀର ମୋହନ ସେନାପତି, ଗଙ୍ଗାଧର ମେହେରଙ୍କ ଭଳି ସାହିତ୍ୟିକମାନେ ଆଜି ଅମରହେଇ ରହି ଯାଇଛନ୍ତି। ସେମାନେ ଜୀବନସାରା ଧନ ଓ ସମୟକୁ ସମାଜପାଇଁ ଦାନ କରିଛନ୍ତି। ତାଙ୍କର ସାହିତ୍ୟ ଓ କଳାତ୍ମକ କାର୍ଯ୍ୟପାଇଁ ତାଙ୍କୁ ଲୋକେ ଆଜିଯାଏ ମନେରଖିଛନ୍ତି। ଏଦିଗରେ ଯେଉଁମାନେ ନିଷ୍ଠାର ସହିତ

କାମକରନ୍ତି,ନିଜର ସୁଖ ଓ ପରିବାରର ସୁଖକୁ ପଛରେ ପକାଇଥାନ୍ତି; ସେମାନେ ଯୁଗଯୁଗ ପାଇଁ ଅମରହେଇ ରହିଯାଆନ୍ତି। ଆପଣ ସେଇଭଳି କିଛିକାମ ଯଦି କରିପାରିବେ, ତାହେଲେ ନିଶ୍ଚୟ ଅମରହେଇ ରହିଯିବେ।'' ପଣ୍ଡିତେ କହିଲେ।

ପଣ୍ଡିତଙ୍କ କଥାଶୁଣି ନେତାମହାପ୍ରଭୁ କହିଲେ-"ନୃତ୍ୟ, ଗୀତ, ସଂଗୀତ କିମ୍ୱା ନାଟକ କାମ ମୋ'ଦ୍ୱାରା ତ ହେଇପାରିବ ନାହିଁ ବୋଲି ମୁଁ ଭାବୁଛି। ତେଣୁ କବି କିମ୍ୱା ଲେଖକଟିଏ ହେବାକୁ ଚେଷ୍ଟାକରିବି । ମୋତେ ଆଗ କୁହନ୍ତୁ, ଫକୀରମୋହନ କିମ୍ୱା ଗଙ୍ଗାଧର ମେହେରଙ୍କ ଭଳି କବି ବା ଲେଖକଟିଏ ହେବାକୁ ହେଲେ କ'ଣ କ'ଣ ଦରକାର ହେବ ?"

ପଣ୍ଡିତେ ବୁଝାଇ ଦେଲେ-"ଲେଖକ ବା କବି ହେବାପାଇଁ ବେଶି କିଛି ଜିନିଷ ଦରକାର ନାହିଁ। କାଗଜ କେତେଖଣ୍ଡ ଆଉ କଲମ ଖଣ୍ଡିଏ ହେଲେ ହେଇଗଲା। ନିୟମିତ ଲେଖାଲେଖି କରୁକରୁ ଆପଣ ବି ଜଣେ ପ୍ରତିଷ୍ଠିତ ଲେଖକ ବା କବିହେଇ ଯାଇପାରିବେ।"

"-ବାଃ ! ଏଇ ପଦକକଥା ମୋ ମନକୁ ପାଇଲା। ଏକଥାଟି ଯଦି ମୁଁ ଆଗରୁ ଜାଣିଥାଆନ୍ତି, ଅଯଥାରେ ମନ୍ଦିର ପୂଜାରୀବୁଢ଼ା କଥାରେ ପଡ଼ି ମିଛରେ ପନ୍ଦର ହଜାର ଟଙ୍କା ବାବାଙ୍କ ଦର୍ଶନୀ ପାଇଁ ଦେଇ ନ ଥାଆନ୍ତି। ମୋର ପନ୍ଦରହଜାର ଟଙ୍କା ପାଣିରେ ପଡ଼ିଗଲା। ଆପଣ ସତରେ ମୋ ପାଇଁ ଭଗବାନହେଇ ନୂଆ ଉପାୟଟିଏ ବତେଇଦେଲେ। ମୁଁ ଆପଣଙ୍କ ପାଦକୁ ଛୁଇଁ ପ୍ରଣାମ ଜଣାଉଛି। ଆପଣ ହିଁ ମୋର ପ୍ରକୃତ ଗୁରୁ। ମୁଁ ଯଦି ଅମରହେଇ ରହିଯାଏ, ତେବେ ଯୁଗଯୁଗ ଧରି ଆପଣଙ୍କର ଜୟଗାନ କରୁଥିବି। ଆପଣ ସ୍ୱର୍ଗରେ ଥାଇ ଦେଖିବେ, ଏଇ ନେତାଜଣକ ଆପଣଙ୍କ ପାଇଁ କେତେକ'ଣ କରୁଛି। ତାହେଲେ ମୁଁ ଏବେ ଘରକୁ ଯାଉଛି। ବହିଦୋକାନରୁ ଦିସ୍ତାଏ କାଗଜ ଆଉ ଡଜନେ କଲମ କିଣି ନେଇଯିବି। ଆଚ୍ଛା ପଣ୍ଡିତେ ! ମୋତେ ଟିକେ କହିଦିଅନ୍ତୁ, କ'ଣ ସବୁ ଲେଖିବି, କେଉଁଠୁ କେମିତି ଆରମ୍ଭ କରିବି ? ଆପଣ ତ ଜାଣିଛନ୍ତି ମୋର ପାଠପଢ଼ା କିଛି ନାହିଁ; କିନ୍ତୁ ଅକ୍ଷର ଲେଖି ଶିଖିଛି। ସେତିକିରେ କାମ ଚଳିଯିବ ତ ?"

ନେତା ମହାପ୍ରଭୁଙ୍କ ବୋକାମୀକୁ ଲକ୍ଷ୍ୟକରି ପଣ୍ଡିତେ କହିଲେ- "ମୁଁ ଆଗରୁ କହିଛି, ସାଧନାଦ୍ୱାରା ହିଁ ସିଦ୍ଧି ମିଳିଥାଏ। ଏହି ସବୁକାମ ଆପଣଙ୍କ ସାଧନା ଓ ନିଷ୍ଠା ତଥା ତ୍ୟାଗଦ୍ୱାରା ହିଁ

ସମ୍ଭବ ହେଇପାରିବ। ତେଣୁ ପ୍ରଥମେ ଲେଖାଲେଖି ଅଭ୍ୟାସ ରଖନ୍ତୁ। ଅନ୍ୟ ଭଲଲେଖକ ଓ କବିଙ୍କର ଲେଖାକୁ ମନଦେଇ ପଢ଼ି ବୁଝନ୍ତୁ। ଯେଉଁଟା ଆପଣଙ୍କୁ ଭଲ ଲାଗିବ, ତାକୁ ଆଉଥରେ ଲେଖନ୍ତୁ। ଏସବୁ ନିର୍ଭର କରେ ଆପଣଙ୍କ ନିଷ୍ଠା ଓ ଅଭ୍ୟାସ ଉପରେ। କିନ୍ତୁ ମୁଁ ଆଗରୁ କହିରଖେ ଯେ, ଲେଖାଲେଖି କରିବା କାମଟା ଅତ୍ୟନ୍ତ କଷ୍ଟସାଧ। ହଉ ଆପଣ ଏବେ ଯାଇ କାମରେ ଲାଗି ଯାଆନ୍ତୁ।"

ପଣ୍ଡିତଙ୍କଠାରୁ ବିଦାୟନେଇ ନେତା ମହାପ୍ରଭୁ ସିଧା ତାଙ୍କ ଘରମୁହାଁ ହେଲେ। ବାଟରେ ଗୋଟାଏ ବହିଦୋକାନ ପଡ଼ିଲା। ସେଇଠୁ ଦିସ୍ତାଏ କାଗଜ ଓ ଡଜନେ କଲମ କିଣିନେଇ ଘରେ ପହଞ୍ଚି ତାଙ୍କ ଘରଣୀକୁ କହିଲେ-"ଆଜିଠାରୁ ମୁଁ ଲେଖାଲେଖି କରି ଜଣେ ପ୍ରତିଷ୍ଠିତ ଲେଖକ ନଚେତ୍ ଉଚ୍ଚମାନର କବିହେବି। ଏଇ କବି ବା ଲେଖକମାନେ ଅମର ହେଇରହିବା ପରି ମୁଁ ବି ଅମରହେଇ ଯୁଗଯୁଗକୁ ରହିଯିବି।"

ନେତା ମହାପ୍ରଭୁଙ୍କ କଥାଶୁଣି ତାଙ୍କ ଘରଣୀ ମନେ ମନେ କହିଲେ-"ଆଜି ୟାଙ୍କର ମୁଣ୍ଡ ଖରାପ ହେଇଯାଇଛି ନା କ'ଣ ? ଯିଏ କେବେ କିଛି ବହି ପଢ଼ନ୍ତି ନାହିଁ କି ଲେଖାଲେଖି ବିଷୟରେ ଯାହାର କିଛି ଧାରଣା ନାହିଁ, ସେ ପୁଣି କ'ଣ ଲେଖାଲେଖି କରି ପ୍ରତିଷ୍ଠିତ ହେବାକଥା କହୁଛନ୍ତି। କେହି ଜଣେ ଦୁଷ୍ଟଲୋକ ୟା'ଙ୍କର ମୁଣ୍ଡକୁ ଖରାପ କରିଦେଇଛି ନିଶ୍ଚୟ। ସେ ଧୀରଗଳାରେ ନେତା ମହାପ୍ରଭୁଙ୍କୁ କହିଲେ-"ଆଜି ତମର କ'ଣ ହେଇଛି ? ତମମୁଣ୍ଡକୁ କିଏ ଖରାପ କରିଛି କୁହ। ମୁଁ ଝାଡୁରେ ପିଟିପିଟି ତା'ପିଠିକୁ ଫଟେଇଦେବି ।"

ଘରଣୀଙ୍କ କଥାଶୁଣି ନେତାମହାପ୍ରଭୁ ରାଗିଯାଇ କହିଲେ-"ତମେ ଜଣେ ମୂର୍ଖନାରୀ। ପାଠଶାଠ ବିଷୟରେ ତମେ କ'ଣ ଜାଣିବ ? ମୁଁ ପରା ପଣ୍ଡିତ ମହାଶୟଙ୍କ ପାଖରୁ ପରାମର୍ଶ ନେଇ ଫେରିଛି। ଆଗରୁ ମନ୍ଦିର ପୂଜାରୀବୁଢ଼ା କଥାରେ ପଡ଼ି ଯାହା ପରାଭବ ପାଇଛି, ସେକଥା ତମେ ଶୁଣିଲେ, ତମର ଛାତି ଫାଟିଯିବ। ଆଜିଠାରୁ ମୁଁ ଲେଖାଲେଖି ଆରମ୍ଭ କରିବି। ତମେ ମୋ କାମରେ ବାଧା ସୃଷ୍ଟିକରିବ ନାହିଁ। ମୁଁ ନିଷ୍ଠାରେ ବସି ଲେଖାଲେଖି କରିବି, ସାଧନାରୁ ସିଦ୍ଧି ଲାଭକରି ନିଶ୍ଚୟ ଅମରହେଇ ରହିବି। ତମେ ସେତେବେଳକୁ ସ୍ୱର୍ଗରେ ଥାଇ ନିଜକୁ ଧନ୍ୟ ମନେକରୁଥିବ। ଆଉ ମୋତେ ଦେଖି ଦାନ୍ତ ନିକୁଟି ହସୁଥିବ।"



ନେତାମହାପ୍ରଭୁଙ୍କର ଢଙ୍ଗରଙ୍ଗ ଦେଖି ତାଙ୍କ ଘରଣୀ ଆଉ କିଛି ନ କହି ସିଧା ଘର ଭିତରକୁ ଚାଲିଗଲେ ।

ନେତାମହାପ୍ରଭୁ ସିନା ଭୋଟପାଇବା କୌଶଳଟା ଜାଣିଥିଲେ ବୋଲି ୱାର୍ଡ଼ ମେମ୍ବରରୁ ଉପରକୁ ଉଠିଉଠି ସମିତି ଚେୟାରମ୍ୟାନ ହେଇଛନ୍ତି। ଅନ୍ୟମାନଙ୍କ କଥାଶୁଣି କାମଟା ଚଳେଇଦିଅନ୍ତି। ଦସ୍ତଖତଟାଏ ଭଲକି ଶିଖି ଯାଇଥିବାରୁ ତାଙ୍କୁ ସରକାରୀ କାମରେ କିଛି ଅସୁବିଧା ହୁଏନାହିଁ। ସେତିକିରେ ସବୁକାମ ଚଳିଯାଏ। ତାଙ୍କୁ ଅମରହେବା ନିଶା ଲାଗିଥିବାରୁ ସେ ଘରେଥିବା ପୁରୁଣା କାଗଜପତ୍ରକୁ



ଘାଣ୍ଟିଚକଟି ପକାଇଲେ । ପୁଅର ପୁରୁଣା ପଢ଼ାବହି କେଇଖଣ୍ଡକୁ ପାଇ ତାକୁ ଖେଳେଇ ବସି ପଡ଼ିଲେ । କାଗଜ କଲମ ବାହାରକରି ତାକୁ ଦେଖି ଲେଖିବା ଆରମ୍ଭ କରିଦେଲେ । ତାଙ୍କର ଏହି ନୂଆ ଅବତାରକୁ ଦେଖି ତାଙ୍କ ପୁଅ ଅବାକ ହେଇଗଲା । ପଚାରିଦେଲା-"ବାପା ! ଏଇ ବହିକୁ ଉତାରି ସାରିଲେ କ'ଣ କରିବ ?"

ନେତା ମହାପ୍ରଭୁ ତ ଆଗରୁ ପୁଅ ଉପରେ ରାଗିକରି ଥିଲେ, ସେ କହିପକାଇଲେ-"ଆରେ ଅକାଳ କୁଷ୍ମାଣ୍ଡ ! ତୁ ତ ପାଠଶାଠ ପଢ଼ିଲୁ ନାହିଁ, ତୋ'ପାଇଁ ମୋତେ ପୁଣିଥରେ ପାଠ ପଢ଼ିବାକୁ

ପଢ଼ିବ। ତା'ପରେ ମୁଁ ଜଣେ ପ୍ରତିଷ୍ଠିତ ଲେଖକ ନ ହେଲେ କବିହେବି। ତେବେଯାଇ ସିନା ମୁଁ ଅମରହେଇ ବଞ୍ଚିରହିବି। ତୋ'ଦ୍ଵାରା ତ କିଛି ହେଇପାରିବ ନାହିଁ। ତେଣୁ ମୁଁ ବଞ୍ଚିରହି ସବୁ ସଞ୍ଚିତଧନକୁ ଜଗାରଖା କରିପାରିବି।"

ବାପାଙ୍କର ସବୁକଥା ଶୁଣିସାରି ପୁଅଟି ଭାବିଲା-"ବୟସ ଅଧିକ ହେଇଯାଇଥିବାରୁ ବୋଧହୁଏ, ବାପାଙ୍କର ପାଗଳାମୀ ବଢ଼ିଯାଇଛି। ତଥାପି ସେ ବାପାଙ୍କ ପାଖକୁ ଯାଇ ନରମଗଳାରେ କହିଲା-





Source: Author, Digitized by PPRACHIN, SOA

"ବାପା ! ରାବଣ ପରା ଛପନଗଣ୍ଡା ଯୁଗ ବଞ୍ଚିବାପାଇଁ ବର ପାଇଥିଲା । ଲକ୍ଷ୍ମୀ ଠାକୁରାଣୀ ପରା ଶ୍ରୀୟା ଚଣ୍ଡାଳୁଣୀକୁ ଅମରବର ଦେଇପାରି ନ ଥିଲେ । ତମେ କେମିତି ଅମରହେଇ ସବୁଦିନପାଇଁ ବଞ୍ଚିରହିବ ? ତମକୁ ପଣ୍ଡିତେ ଠକି ଦେଇଛନ୍ତି । ଆଜିଯାଏ କେହି ଅମରହେଇ ଦୁନିଆରେ ବଞ୍ଚି ରହିନାହାନ୍ତି । ଲୋକଟି ମଲାପରେ ସିନା ଅମର ହୁଏ । ମୁଁ ଯାହା ଭାବୁଛି-ତମର ବୋଧହୁଏ ଅମର ହେବାରବେଳ ଆସିଯାଇଛି । ମାନେ........... ।

ପୁଅର କଥାଶୁଣି ନେତା ମହାପ୍ରଭୁ ତା କଥାର ଅସଲ ମର୍ମକୁ ବୁଝି ଭୀଷଣ ଭାବରେ ରାଗିଯାଇ ପୁଅକୁ କହିଲେ-"ତା'ମାନେ ତୁ କହୁଛୁ ମୋର ମୃତ୍ୟୁବେଳ ଆସିଯାଇଛି ।''



ଉଚ୍ଚସ୍ୱରରେ କଥା କହୁକହୁ ହଠାତ ନେତା ମହାପ୍ରଭୁଙ୍କ ଛାତିରେ ବ୍ୟଥା ବାହାରିପଡ଼ିଲା । ଡାକ୍ତରବାବୁ ଦେଖୁଦେଖୁ ତାଙ୍କର ଚେତା ବୁଡ଼ିଗଲା । ସେ ଆଉ ଜୀବନନେଇ ଫେରିପାରିଲେ ନାହିଁ । ଅମରହେଇ ବଞ୍ଚିରହିବାର ଆଶା ତାଙ୍କର କେବଳ ଆଶାରେ ହିଁ ରହିଗଲା ।



# ସ୍ୱଚ୍ଛ ଭାରତ

ଥରେ ଗୋଟିଏ ବିଦ୍ୟାଳୟରେ ବାର୍ଷିକୋତ୍ସବ ହେଉଥାଏ । ସେଥିପାଇଁ ପିଲାମାନଙ୍କର ଆନନ୍ଦ କହିଲେ ନ ସରେ। ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଅନ୍ୟ ଶିକ୍ଷକ-ଶିକ୍ଷୟିତ୍ରୀଙ୍କ ସହିତ ମିଶି ଉତ୍ସବଟିକୁ ସରସ ସୁନ୍ଦର କରିବା କାମରେ ଲାଗିପଡ଼ିଥା'ନ୍ତି।




**एक कदम स्वच्छता की ओर**

ସଞ୍ଜବେଳକୁ ବିଦ୍ୟାଳୟର ଖେଳପଡ଼ିଆଟି ଚମକି ଉଠିଲା। କେତେ ରଙ୍ଗ-ବେରଙ୍ଗ ଆଲୋକ, ସୁନ୍ଦର ତୋରଣ, ଫୁଲରେ ସଜାହୋଇଥିବା ମଞ୍ଚକୁ ଦେଖି ପିଲାଙ୍କ ମନ ଉଛନ୍ନ ହେଉଥାଏ । ସେମାନଙ୍କ ମଧ୍ୟରୁ କେତେଜଣ ସଙ୍ଗୀତ ପରିବେଷଣ କରିବେ। ଆଉ କେତେଜଣ ପିଲା ଗୋଟାଏ ନୂଆ ଏକାଙ୍କିକା ପରିବେଷଣ କରିବାକୁ ପ୍ରସ୍ତୁତ ହେଇରହିଛନ୍ତି।

ଉତ୍ସବର ମୁଖ୍ୟ ଅତିଥିଙ୍କୁ ପ୍ରଧାନ ଶିକ୍ଷକ ସ୍ୱାଗତ ଜଣାଇ ମଞ୍ଚ ଉପରକୁ ଆଣିଲେ। ଅନ୍ୟମାନଙ୍କ ମଧ୍ୟରେ ବିଦ୍ୟାଳୟର ବିଜ୍ଞାନ ଶିକ୍ଷକ, ଖେଳ ଶିକ୍ଷକ ଓ ସଙ୍ଗୀତ ଶିଖାଉଥିବା ଦିଦି ଏବଂ ସେ ଅଞ୍ଚଳର ବିଶିଷ୍ଟ ଲୋକମାନେ ମଧ୍ୟ ମଞ୍ଚ ଉପରକୁ ଉଠିଲେ। ମୁଖ୍ୟ ଅତିଥିଙ୍କ ପାଖ ଚୌକିରେ ପ୍ରଧାନ ଶିକ୍ଷକ ଓ ଅନ୍ୟମାନେ ବସିଲେ।

ବିଦ୍ୟାଳୟର ସମସ୍ତ ଛାତ୍ରଛାତ୍ରୀ ତାଙ୍କର ଅଭିଭାବକମାନଙ୍କ ସହିତ ମଞ୍ଚ ଆଗରେ ବସିଥା'ନ୍ତି। ସଭା ଆରମ୍ଭ ହେଲା। ପ୍ରଦୀପ ପ୍ରଜ୍ୱଳନ ପରେ ବନ୍ଦେ ଉତ୍କଳ ଜନନୀ ଗୀତକୁ ଛୋଟ ପିଲାମାନେ ପରିବେଷଣ କଲେ। ସମସ୍ତେ ଠିଆହେଇ ଉତ୍କଳ ବନ୍ଦନାକୁ ସମ୍ମାନ ଜଣେଇଲେ।



ପ୍ରଥମେ ପ୍ରଧାନ ଶିକ୍ଷକ ଉତ୍ସବର ମୁଖ୍ୟ ଅତିଥିଙ୍କୁ ପରିଚୟ କରାଇଦେଇ କହିଲେ, "ଆଜି ଯିଏ ଆମର ଅତିଥି ହେଇ ଉତ୍ସବକୁ ଆସିଛନ୍ତି, ସେ ଜଣେ ବିଖ୍ୟାତ ଲେଖକ। ତାଙ୍କର ଗପ, ଗୀତ ଓ ପ୍ରବନ୍ଧ ପିଲାଙ୍କ ପଢ଼ାବହିରେ ସ୍ଥାନ ପାଇଛି। ସେ ଜଣେ ଆଗଧାଡ଼ିର ଲେଖକ। କେବଳ ସେତିକି ନୁହେଁ, ସେ ମଧ୍ୟ ଜଣେ ଦାର୍ଶନିକ ଏବଂ ସମାଜସେବକ ଭାବରେ ପରିଚିତ। ଆଜି ପିଲାମାନେ ତାଙ୍କୁ ଦେଖିବାର ସୁଯୋଗ ପାଇଲେ। ତାଙ୍କଠାରୁ ଅନେକ ନୂଆକଥା ମଧ୍ୟ ଶୁଣିବାକୁ ପାଇବେ। ଆମେମାନେ ତ ସବୁଦିନ ପିଲାଙ୍କୁ ବିଭିନ୍ନ କଥା କହିଥାଉ। ତେଣୁ ଆଜି ଆମେ କିଛି କହିବୁ ନାହିଁ। କେବଳ ମୁଖ୍ୟଅତିଥି ଯାହା କହିବେ, ତାକୁ ଆମେ ଶୁଣିବା। ତାଙ୍କର ଆଦର୍ଶ ତଥା ମୂଲ୍ୟବାନ କଥାକୁ କାମରେ ଲଗାଇ ଜଣେ ଜଣେ ସଚେତନ ନାଗରିକ ହୋଇପାରିବା।



ମୁଖ୍ୟଅତିଥିଙ୍କ ଭାଷଣ ପରେ ପରେ ପିଲାମାନେ ତାଙ୍କର ମନୋରଞ୍ଜନ କାର୍ଯ୍ୟକ୍ରମ ପରିବେଷଣ କରିବେ।ଏବେ ମୁଁ ମୁଖ୍ୟ ଅତିଥିଙ୍କୁ ଅନୁରୋଧ କରୁଛି, ସେ ଆମର ପିଲାମାନଙ୍କୁ ତଥା ଶିକ୍ଷକ ଓ ଅଭିଭାବକମାନଙ୍କୁ ତାଙ୍କର ମୂଲ୍ୟବାନ ମନ୍ତବ୍ୟ ପ୍ରଦାନ କରିବେ। ଯାହାଦ୍ୱାରା ଆମର ପିଲାମାନେ ଭବିଷ୍ୟତରେ ଭଲମଣିଷ ହେଇ ଆମ ଅଞ୍ଚଳର ସୁନାମ ବଢ଼େଇ ପାରିବେ।"

ମୁଖ୍ୟଅତିଥି ମହୋଦୟ ତାଙ୍କର ଭାଷଣ ମାଧ୍ୟମରେ ଜଣେ ଭଲମଣିଷର ଲକ୍ଷଣ ଓ କାର୍ଯ୍ୟ ସମ୍ପର୍କରେ ବୁଝାଇଲେ। ସୁନ୍ଦର ଉଦାହରଣ ଦେଇ ପୁରାଣରୁ ଗପ ମଧ୍ୟ କହିଲେ। କେବଳ ଭଲ ପାଠପଢ଼ି ଅଧିକ ନମ୍ବର ରଖିଲେ ଯେ, ସିଏ ଭଲମଣିଷ ହୋଇପାରିବ, ସେକଥା ନୁହେଁ। ପାଠ ସହିତ ଶାଠର ମଧ୍ୟ ଆବଶ୍ୟକତା ରହିଛି। ଉପସ୍ଥିତ ବୁଦ୍ଧି, ନିର୍ଲୋଭ, ପରୋପକାର, ସାମୂହିକ କାର୍ଯ୍ୟ, ଜୀବେଦୟା, ବୟସ୍କମାନଙ୍କ ପ୍ରତି ଭକ୍ତି, କାର୍ଯ୍ୟରେ ନିଷ୍ଠା, ଅନ୍ୟକୁ କ୍ଷମା, ନିଜ ବିବେକ ଅନୁମୋଦିତ କର୍ମଦ୍ୱାରା ମଣିଷ କିପରି ବଡ଼ମଣିଷ ହୁଏ, ସେକଥା ମଧ୍ୟ ବୁଝାଇଦେଲେ। ସମସ୍ତେ ତାଳିମାରି ତାଙ୍କକଥାକୁ ସମର୍ଥନ ଜଣାଇଲେ।



ଶେଷରେ ପରିଷ୍କାର ପରିଚ୍ଛନ୍ନତା ମାଧ୍ୟମରେ ଆମେ କେମିତି ବିଭିନ୍ନ ରୋଗର ଶିକାର ହେଉଛେ, ସେକଥା କହିବା ଆରମ୍ଭ କଲେ।

"ମଇଳା ହେଉଛି-ବିଭିନ୍ନ ରୋଗର କାରଣ। ମଇଳା ପରିବେଶରେ ରହିବା ଏବଂ ମଇଳା ପାଣି ପିଇବା ଫଳରେ ଆମେ ରୋଗକୁ ଡାକିଆଣି ଆମ ଶରୀର ଭିତରେ ପୂରାଇ ରଖୁଛୁ। ଝାଡ଼ା, ବାନ୍ତି, ହଇଜା, କାଛୁକୁଣ୍ଡିଆ, ଯାଦୁ ଭଳି ରୋଗ ମଇଳାଦ୍ୱାରା ହୋଇଥାଏ। ଅତୀତରେ ଆମ ଦେଶରେ ହଇଜା ରୋଗରେ ପଡ଼ି ହଜାର ହଜାର ଲୋକ ମରିଯାଉଥିଲେ। ଜଣାପଡ଼ିଲା, କେବଳ ଅପରିଷ୍କାର ପରିବେଶ ଓ ମଇଳା ମିଶା ଖାଦ୍ୟ, ପାଣି ପିଇ ଲୋକମାନେ ଏହି ରୋଗରେ ପଡୁଛନ୍ତି। ତେଣୁ ପାଣିକୁ ଛାଣି ପିଇବାକୁ କୁହାଗଲା। ବାସି ପଚାସଢ଼ା ଖାଦ୍ୟରେ କିପରି ରୋଗଜୀବାଣୁ ବ୍ୟାପେ, ସେକଥା ମଧ୍ୟ ଡାକ୍ତରମାନେ ବୁଝାଇ ଦେଲେ। ଲୋକମାନେ ସେକଥା ଜାଣିପାରିବାରୁ ଆମ ଦେଶରୁ ହଇଜା ରୋଗ ଦୂରେଇ ରହିଲା। ଜଣ୍ଡିସ୍ ରୋଗ ମଧ୍ୟ ମଇଳା ମିଶା ପାଣିରୁ ବ୍ୟାପିଥାଏ। ଅପରିଷ୍କାର ଜାଗାରେ ଥିବା ଦୂଷିତ ପାଣି ମାଧ୍ୟମରେ ପ୍ରାୟ ସତୁରି ଭାଗ ରୋଗ ଆମ ଦେହ ଭିତରକୁ ଆସେ । ଏସବୁ କଥା ତ ମୁଁ ସମସ୍ତଙ୍କୁ କହିଲି, ଏବେ ମୁଁ ଉପସ୍ଥିତ ପିଲାମାନଙ୍କୁ ଗୋଟିଏ ଛୋଟପ୍ରଶ୍ନ ପଚାରିବି । ଯିଏ ତା'ର ଠିକ୍ ଉତ୍ତର କହିପାରିବ, ସେ ହାତ ଟେକିବ, ମୁଁ ଠିକ୍ ଉତ୍ତରଦାତାଙ୍କୁ ଏକଶହ ଟଙ୍କା ପୁରସ୍କାର ଦେବି।

ତେବେ ମୋର ପ୍ରଶ୍ନଟିକୁ ଆଗ ମନଦେଇ ଶୁଣ । ତା'ପରେ ଟିକେ ଚିନ୍ତାକରି ଠିକ୍ ଉତ୍ତର ଦେବାକୁ ଚେଷ୍ଟା କରିବ।"

ପିଲାମାନେ ମୁଖ୍ୟ ଅତିଥିଙ୍କର କଥାଶୁଣି ଚୁପ୍‌ଚାପ୍ ହେଇଗଲେ। ଶିକ୍ଷକ ଶିକ୍ଷୟିତ୍ରୀମାନେ ମଧ୍ୟ ଏକଧ୍ୟାନରେ ମୁଖ୍ୟଅତିଥିଙ୍କ ଆଡ଼କୁ ଚାହିଁରହିଲେ।

— 'ମଇଳା' କାହାକୁ କହନ୍ତି ?



- ମଇଳା କହିଲେ ତୁମେ କ'ଣ ବୁଝ ?

ଏହି କଥାକୁ ସଂକ୍ଷେପରେ କହିଲେ ବି ଚଳିବ। ଯଦି କେହି ଉତ୍ତରଟିକୁ ବିସ୍ତୃତ କରି କହିବାକୁ ଚାହେଁ, ତାହା ମଧ୍ୟ ହୋଇପାରିବ।

ମୁଖ୍ୟଅତିଥିଙ୍କ ପ୍ରଶ୍ନଟିକୁ ଶୁଣି ପିଲାମାନେ ପରସ୍ପର ପରସ୍ପରକୁ ଚାହିଁଲେ। ଆଗପଛକୁ ଚାହିଁ ଦେଖିଲେ କେହି ବି ଜଣେ ପିଲା ଉତ୍ତର ଦେବାପାଇଁ ହାତ ଟେକି ନାହାନ୍ତି। ପ୍ରଧାନ ଶିକ୍ଷକ ଷଷ୍ଠଶ୍ରେଣୀ ପିଲାଙ୍କଠାରୁ ଆରମ୍ଭ କରି ଦଶମ ଶ୍ରେଣୀ ପର୍ଯ୍ୟନ୍ତ ସବୁ ଶ୍ରେଣୀର ପିଲାଙ୍କୁ ଚାହିଁ ହାତ ଉଠେଇବାକୁ ଇସାରା ଦେଉଥା'ନ୍ତି। କିନ୍ତୁ ସେ ଲକ୍ଷ୍ୟକଲେ, ପିଲାମାନେ ମଥା ତଳକୁ କରି ଅନ୍ୟମନସ୍କ ହେବାର ଅଭିନୟ କରୁଛନ୍ତି। ସେ ତାଙ୍କର ସହକର୍ମୀ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଚାହିଁଲେ,

ସେମାନେ ବି ତଳକୁ ଚାହିଁ ନିରବରେ ବସିଛନ୍ତି। କାହାରି ପାଟିରୁ କଥା ପଦିଏ ବାହାରୁ ନାହିଁ।

ମୁଖ୍ୟଅତିଥି କିଛି ସମୟ ଚାରିଆଡ଼କୁ ଅନେଇ ଜାଣିପାରିଲେ, ପିଲାମାନେ ଠିକ୍ ଉତ୍ତର ଜାଣିଥିଲେ ବି କାଳେ ଭୁଲ ହୋଇଯିବ ମନେକରି କେହି ବି ଜଣେ ସାହସ କରି ହାତ ଉପରକୁ ଟେକିପାରୁ ନାହାନ୍ତି। ତେଣୁ ସେ ଶିକ୍ଷକ-ଶିକ୍ଷୟିତ୍ରୀମାନଙ୍କୁ ଏହି ପ୍ରଶ୍ନର ସରଳ ଉତ୍ତର କହିଦେବାକୁ ଅନୁରୋଧ କଲେ। ସେମାନେ ମଧ୍ୟ ସାହସ କରି ଉତ୍ତର ଦେଇପାରିଲେ ନାହିଁ।

ପ୍ରଧାନ ଶିକ୍ଷକ ତାଙ୍କ ସହକର୍ମୀମାନଙ୍କର ଅସହାୟତାକୁ ଦେଖି ବଡ଼ ଲଜ୍ଜିତ ହେଲେ। ଶେଷରେ ସେ ଠିଆହୋଇ କହିଲେ -"ମୁଁ ସେ ପ୍ରଶ୍ନର ଉତ୍ତର ଦେଇଦେଉଛି।






ଯେଉଁ ଜିନିଷ ଉପଯୁକ୍ତ ସ୍ଥାନରେ ନ ରହି ଅନ୍ୟତ୍ର ଏଣେତେଣେ ପଡ଼ିଥାଏ, ତାକୁ ହିଁ ମହିଳା କୁହାଯାଏ। ମନେ କରାଯାଉ, ଗୋଲାପ ଫୁଲଟି ଯଦି ଫୁଲଦାନୀ ବା ଫୁଲକୁଣ୍ଡ କିମ୍ବା ଫୁଲମାଳରେ ଅଛି, ତାକୁ ଆମେ ଆଦର କରିଥାଉ। କିନ୍ତୁ ସେହି ଫୁଲଟି ଯଦି ଘର ଅଗଣାରେ ବା ରାସ୍ତାରେ ପଡ଼ିଥାଏ, ତେବେ ତାକୁ ଆମେ ଆଦର ନ କରି ଗୋଡ଼ରେ ଆଡ଼େଇ ଦେଇ ଚାଲିଯାଉ। ଫୁଲର ପାଖୁଡ଼ା ଓ ଡେମ୍ଫ ଏଣେତେଣେ ବିଛୁଡ଼ିହେଇ ପଡ଼ିଥିଲେ, ତାକୁ ଆମେ ମଇଳା ବା ଅଳିଆ ବୋଲି କହିଥାଉ। ତାକୁ ଝାଡୁମାରି ସଫା କରିବାକୁ ହୁଏ ।"

ପ୍ରଧାନ ଶିକ୍ଷକଙ୍କ କଥାପଦକ ମୁଖ୍ୟ ଅତିଥିଙ୍କ ମନକୁ ପାଇଗଲା। ସେ ଖୁସିହେଇ କହିଲେ, "ମୁଁ ଠିକ୍ ଏହି ଉତ୍ତରଟିକୁ ପାଇବାପାଇଁ ଅପେକ୍ଷା କରିଥିଲି। ପିଲାମାନେ

ଏକଥାକୁ ସବୁଦିନପାଇଁ ମନେରଖିବେ। ଯେକୌଣସି ଜିନିଷ ଉପଯୁକ୍ତ ସ୍ଥାନରେ ନ ରହି ଏଣେତେଣେ ବିଛୁଡ଼ିହେଇ ପଡ଼ିଲେ, ତାକୁ ଆମେ ମଇଳା କହିଥାଉ। କେବଳ ଦରକାରୀ ଜିନିଷ ନୁହେଁ, ଅଦରକାରୀ ଜିନିଷ ମଧ୍ୟ ତା' ସ୍ଥାନରେ ନ ରହି ଅନ୍ୟ ଜାଗାରେ ରହିଲେ, ତାକୁ ମଧ୍ୟ ମଇଳା କୁହାଯାଏ। ଯେମିତି ଧରାଯାଉ, ଆମେ ବିସ୍କୁଟ୍ ପକେଟ୍‌କୁ ଖୋଲି ଆମେ ବିସ୍କୁଟ୍ ଖାଇଦେଉ। ତା'ର ଜରିଖୋଳ ବା କାଗଜଖୋଳକୁ ଯଦି ଆମେ ପଢ଼ାଘର ଟେବୁଲ୍ ଉପରେ ରଖିଦେବା କିମ୍ବା ଘରକୋଣକୁ ଫୋପାଡ଼ିଦେବା, ସେ କାଗଜଟି ମଇଳା ବା ଅଳିଆ ହୋଇଯାଏ। ତାକୁ ଯଦି ଆମେ ନିର୍ଦ୍ଧାରିତ ମଇଳାଗଦା ବା ଅଳିଆଗଦାରେ ପକାଇଦେବା, ତାକୁ ଆଉ କେହି ମଇଳା ବୋଲି କହିପାରିବେ ନାହିଁ।

ଆଜିକାଲି ଆମେ ସବୁ ଦେଖୁଛେ, ରାସ୍ତାକଡ଼, ଘରପାଖ ଆଉ ନାଳରେ ବିଭିନ୍ନ ପ୍ରକାର ଜରି, ଅଖା, କାଗଜଖୋଳ ପଡ଼ିରହୁଛି। ଘରପାଖକୁ ଲାଗି ତିଆରି କରାଯାଇଥିବା ନାଳରେ ବର୍ଷାପାଣି, ଆମର ବଳକା ପାଣି ଯିବା କଥା; କିନ୍ତୁ ଆମଲୋକମାନେ ସେଇ ପାଣିନାଳରେ ଘରର ଅଦରକାରୀ ଜିନିଷ, ଜରି, ଅଖା, କାଗଜଖୋଳ ଭଳି ଆହୁରି କେତେ ଜିନିଷ ପକାଇଦିଅନ୍ତି। ପନିପରିବା ଚୋପା, ବଳକା ଖାଦ୍ୟ, ମାଂସର ହାଡ଼, ମାଛକଣ୍ଟାକୁ ମଧ୍ୟ ସେଇ ନାଳରେ ପକାଇ ଦେଇଥା'ନ୍ତି। ସେମାନେ ଘର ସଫାକରି ଅଳିଆ ଆବର୍ଜନାକୁ ଆଣି ଯେଉଁଠି ଇଚ୍ଛା, ସେଇଠି ପକେଇ ଦିଅନ୍ତି। ଏହାଦ୍ୱାରା ସାଇପଡ଼ିଶାର ଲୋକମାନେ ଅସୁବିଧାରେ ପଡ଼ନ୍ତି। ନାଳରେ ପାଣିଯାଇ ନ ପାରି ଅସନା ଜିନିଷକୁ ପଚାଇ ଦିଏ। ପଚାଗନ୍ଧରେ ଆଖପାଖ ଲୋକ ସୁସ୍ଥ ରହିପାରନ୍ତି ନାହିଁ। ପଚାନାଳରେ ପୋକ ସାଲୁବାଲୁ ହୁଅନ୍ତି। ସେଥିରେ ମଶାମାନେ ଅଣ୍ଡାଦେଇ ଅଧିକରୁ ଅଧିକ ଲୋକଙ୍କୁ ମେଲେରିଆ ରୋଗୀ କରିଦିଅନ୍ତି। ଫାଇଲେରିଆ ରୋଗରେ ଭଲ ମଣିଷକୁ ଅକାମୀ କରିଦିଅନ୍ତି। ସେଇ ପଚାନାଳରେ ମାଛି ବସି ପୁଣି ଆମଖାଦ୍ୟ ଉପରେ ବସନ୍ତି। ତାଙ୍କ ଗୋଡ଼ରେ ହଇଜା ରୋଗର ଜୀବାଣୁ ଆସି ଆମର ପେଟରୋଗ ସୃଷ୍ଟି କରନ୍ତି। ଝାଡ଼ାବାନ୍ତି ରୋଗ କରାନ୍ତି।

ରାସ୍ତାକଡ଼ରେ ଜରି, ଛିଣ୍ଡା କାଗଜ, ଅଦରକାରୀ ଜିନିଷ ପଡ଼ିରହିଥିଲେ, ତାହା ପୁଣି ପବନରେ ଉଡ଼ିଆସି ଧୂଳି ସହିତ ଆମଘରେ ପଶେ । ଖାଲି ସେତିକି ନୁହେଁ, ସେଇ ଜରିରୁ ନିର୍ଗତ ହେଉଥିବା ଦୂଷିତ ଗ୍ୟାସ୍ ମଣିଷ ସମାଜ ପାଇଁ ଅନେକ କ୍ଷତି କରିଥାଏ। ସେଇଥିପାଇଁ ସରକାର ଜରିରେ ତିଆରି ବ୍ୟାଗ୍ ବ୍ୟବହାରକୁ ବନ୍ଦ କରାଇଛନ୍ତି। କିନ୍ତୁ ଲୋକେ ସଚେତନ ନ ହେଲେ ଜରିବ୍ୟାଗ୍‌ର ବ୍ୟବହାର ବନ୍ଦ ହେଇପାରିବ ନାହିଁ । ସେଇ ଜରିର ଆଉ ଗୋଟାଏ ଖରାପ ଗୁଣ ହେଲା, ତାହା ବର୍ଷବର୍ଷ ଧରି ପଡ଼ିରହେ। ମାଟିରେ ମିଶେ ନାହିଁ କି ଶୀଘ୍ର ନଷ୍ଟ ହୁଏନାହିଁ । ବରଂ ଅନ୍ୟମାନଙ୍କୁ କଷ୍ଟଦେଇ ନଷ୍ଟ କରିଦିଏ। ଏହି ଅଳିଆ ଜରି ମାନବ ସମାଜପାଇଁ ଏକପ୍ରକାର ଶତ୍ରୁ ପାଲଟିଛି। ବ୍ୟବହାର ପରେ ଆମେ ସେଇ ଜରିକୁ ନଷ୍ଟ କରିପାରୁନାହୁଁ। ଏଗୁଡ଼ିକ ଅଳିଆ ବା ମଇଳା ହିସାବରେ ନାଳ ନର୍ଦ୍ଦମା ଓ ଘର ଚାରିପାଖରେ ପଡ଼ି ଆମର ପରିବେଶକୁ ଦୂଷିତ କରୁଛି ।



ଆମେ ସମସ୍ତ ଚାହିଁଲେ, ଏଇ ଅଳିଆ ତା'ର ଉପଯୁକ୍ତ ସ୍ଥାନରେ ପଡ଼ିରହିବ। କଥାରେ ଅଛି-ମୂଲୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିଆଁ କଳି। ଆମେ ଯଦି ଏଇ ଜରିଖୋଳକୁ ବ୍ୟବହାର ନ କରିବା, ତେବେ ଆମ ପରିବେଶ ସବୁଦିନ ପାଇଁ ସୁସ୍ଥ ରହିପାରିବ। ପରିବେଶ ସୁସ୍ଥ ରହିଲେ, ଆମେ ସୁସ୍ଥ ବା ନିରୋଗ ରହିପାରିବା। ବହିରେ ତମେମାନେ ପଢ଼ିଥିବ - ନଖର ମଇଳା ରୋଗର ଘର। ନଖ ଆମର କେତେ ଉପକାର କରେ। ନଖରେ ଦେହ କୁଣ୍ଡେଇଥାଉ। ନଖ ଆମ ଆଙ୍ଗୁଳିକୁ ଟାଣ କରି ରଖିଥାଏ। ଏହି ନଖ ସଫା ସୁତର ରହିଲେ, ସୁନ୍ଦର ଦିଶେ। ଯେତିକି ନଖ ଦରକାର, ସେତିକି ରଖବା, ତାକୁ ସଫା ସୁନ୍ଦର କରିବା ଆମର କାମ। ଅଯତ୍ନରେ ବଢ଼ିଥିବା ନଖ ଫାଟିଯାଏ। ଲମ୍ବାନଖ ବାଜି ନିଜର ପୁଣି ଅନ୍ୟ ସାଙ୍ଗମାନଙ୍କ ଦେହରେ କ୍ଷତ ହୋଇପାରେ। ବଡ଼ନଖରେ ମଇଳା ଜମିରହେ। ନଖ ମଇଳାରେ ବିଭିନ୍ନ ରୋଗର ଜୀବାଣୁ ବସାବାନ୍ଧି ରହନ୍ତି। କେହିକେହି ନଖକୁ ପାଟିରେ ପୂରାଇ ଦାନ୍ତରେ ଛିଣ୍ଡାନ୍ତି। ଏହାସବୁ ଆମର ବଦଗୁଣ। ଘରକୁ ନିୟମିତ ଝାଡ଼ୁଦେଇ ସଫାକରିବା ଭଳି ନଖର ଯତ୍ନ ନେବାପାଇଁ ତାକୁ ନିୟମିତ ସଫା କରିବା ଉଚିତ। ପ୍ରତି ପନ୍ଦର ଦିନରେ ଥରେ ନଖକାଟି ଛୋଟ କରିଦେବା ଦରକାର।

ଆମେ ହାତପାଦରେ ଲାଗିଥିବା ମଇଳା ପ୍ରତି ନଜର ନେଉନା। ତେଣୁ ବାହାର ମଇଳାରେ ଥିବା ଜୀବାଣୁ ହାତପାଦ ମାଧ୍ୟମରେ ଆମଦେହ ଭିତରକୁ ଯାଆନ୍ତି। ଖାଇବା ଆଗରୁ ପୁଣି ଖାଇବା ପରେ ଆମେ ସାବୁନ ଦେଇ ଭଲକରି ହାତ ଧୋଇବା ଉଚିତ। ସେଇମିତି ବାହାରୁ ଆସି ପାଦକୁ ଧୋଇବା ଭଲ ଅଭ୍ୟାସ। ପାଦ ଓ ଆଙ୍ଗୁଳି ସନ୍ଧିରେ ଥିବା ମଇଳାକୁ ଭଲକରି ସାବୁନଦେଇ ଧୋଇବା ଉଚିତ।

ରାସ୍ତାଘାଟ, ବିଦ୍ୟାଳୟର ପରିବେଶ ସଫାସୁତର ରହିଲେ, ଆମେ ସୁସ୍ଥରେ ରହିପାରିବା। ତମେମାନେ ଭାବୁଥିବ ଯେ, ଆମେ ତ ଏତେ ଛୋଟପିଲା, ଏସବୁ କାମ ଆମଦ୍ୱାରା କ'ଣ ହୋଇପାରିବ? ବଡ଼ଲୋକମାନେ ଏସବୁ କାମ କରିବା



କଥା । ବଡ଼ଲୋକମାନେ ଭାବୁଛନ୍ତି, ଅପରିଷ୍କାର କରିବା ଆମର କାମ । ସଫାସୁତର କରିବା ହେଉଛି ସରକାରଙ୍କ କାମ ।

ଆଗ ଆମେ ବୁଝିନେବା-ସରକାର କିଏ ? ଆମଦ୍ୱାରା ନିର୍ବାଚିତ ହେଉଥିବା ପ୍ରତିନିଧିମାନେ ସରକାର ଗଢ଼ନ୍ତି । ସେମାନେ ସରକାରୀ କଳକୁ ଚଳାନ୍ତି । ଗ୍ରାମର ୱାର୍ଡ଼ ମେମ୍ବରଠାରୁ ଦେଶର ରାଷ୍ଟ୍ରପତିଙ୍କ ପର୍ଯ୍ୟନ୍ତ ହେଉଛନ୍ତି ଲୋକ ପ୍ରତିନିଧି । ସେମାନେ ଆଇନ ଗଢ଼ିଦିଅନ୍ତି ସତ, କିନ୍ତୁ ଆମେ ଜନସାଧାରଣ ଯଦି ସେ ଆଇନକୁ ମାନିନେବୁ, ତେବେ ସିନା ସବୁ କାମ ସହଜ ଆଉ ସୁନ୍ଦର ହୋଇପାରିବ । ସରକାରୀ

କର୍ମଚାରୀମାନେ ମଧ୍ୟ ଆମରି ଭିତରୁ କେହିଜଣେ ହୋଇଥା'ନ୍ତି। ସେମାନେ ଆମର ନିଜର ଲୋକ। ଆମର ଅଭାବ ଅସୁବିଧା କଥାକୁ ସେମାନେ ଠିକ୍ ଭାବରେ ଜାଣିଥା'ନ୍ତି। କିନ୍ତୁ ଜନସାଧାରଣଙ୍କର ସହଯୋଗ ନ ପାଇଲେ, ସେମାନେ କିଛି କରିପାରନ୍ତି ନାହିଁ। ନାଳ ନର୍ଦ୍ଦମା, ରାସ୍ତାଘାଟ ଏବଂ ସର୍ବସାଧାରଣଙ୍କ ସ୍ଥାନରେ ଅଳିଆ ଗଦା ହେଇଗଲେ, ତାକୁ କେବଳ ସରକାରୀ କର୍ମଚାରୀମାନେ ଯେ ସଫା କରିଦେଇପାରିବେ, ସେଭଳି ଭାବିବା ଠିକନୁହେଁ।

ଯେଉଁ ସ୍ଥାନରେ ଅଳିଆ ଜମା କରିବା ଉଚିତ, ଆମେ ଯଦି ସେ ଜାଗାରେ ନ ପକାଇ ଘରପାଖ ନାଳ ବା ପଡ଼ୋଶୀ ଘରକଡ଼ରେ ପକାଇଦେବା, ତେବେ ସେ ଜାଗାଟି ସଫା ହେଇପାରେ ନାହିଁ । ନାଳରେ ଅଳିଆ ପଡ଼ି ପଚେ। ପାଣି ସହଜରେ ଯାଇପାରେ ନାହିଁ। ପଚା ନାଳପାଣି ଗନ୍ଧ ହୁଏ। କିଛିଦିନ ପରେ ସେ ଜାଗା ନରକ କୁଣ୍ଡରେ ପରିଣତ ହୋଇଯାଏ। ବର୍ଷା ଅସରାଏ ହେଇଗଲେ, ସେଇ ପଚା ନାଳପାଣି ଆସି ଆମଘରେ ପଶେ। ସେତେବେଳେ ଆମେ ସରକାରଙ୍କ ଦୋଷ ଦେଉ, ନ ହେଲେ ପଡ଼ୋଶୀ ଘର ଲୋକଙ୍କୁ ଗାଳିଦେଉ। ନିଜ ଘରଲୋକଙ୍କୁ ଦୋଷ ଦେବାକୁ ଭୁଲିଯାଉ।

ଭାରତ ବର୍ଷ ହେଉଛି, ଅନେକ ପବିତ୍ର ନଦନଦୀର ଦେଶ। ନଦୀ କୂଳେ କୂଳେ ଅସଂଖ୍ୟା ଗ୍ରାମ ଓ ସହର ଗଢ଼ିଉଠିଛି। ସ୍ଥାନୀୟ ଲୋକମାନେ ସେଇ ନଦୀରୁ ପାଣିନେଇ କାରବାର କରି ବଞ୍ଚିଥା'ନ୍ତି। ନଦୀରୁ ମାଛ ଧରିଥା'ନ୍ତି। ସବୁକାମରେ ନଦୀଗୁଡ଼ିକ ଜୀବଜଗତକୁ ସାହାଯ୍ୟ କରିଥା'ନ୍ତି। କିନ୍ତୁ ଦୁଃଖର କଥା, ଆମର ଲୋକେ ନଦୀକୁ ଗୋଟାଏ ଆବର୍ଜନା ଗଢ଼ିଆ ବୋଲି ଭାବନ୍ତି। ବହିପତ୍ରରୁ ପଢ଼ନ୍ତି- ନଦୀ ହେଉଛି, ଆମର ମାଆ । କିନ୍ତୁ କାମରେ ଓଲଟା କରନ୍ତି। ନିଜ ଘରର ଆବର୍ଜନା ମଇଳାକୁ ନେଇ ସେମାନେ ନଦୀକୁ ପକାଇ ଦିଅନ୍ତି। ମଲାଜୀବ ଓ ମଣିଷର ଶବକୁ ମଧ୍ୟ ନଦୀରେ ଭସାଇ ଦିଅନ୍ତି। ବିଭିନ୍ନ ପର୍ବପର୍ବାଣି, ପୂଜାପାର୍ବଣରେ



ଦେବଦେବୀ ମୂର୍ତ୍ତି ଓ ପୂଜା ଜିନିଷକୁ ନେଇ ନଦୀରେ ପକାଇଦେଇ ସେମାନେ ଧର୍ମ କଲେ ବୋଲି ମନେ କରନ୍ତି । ଏହାଦ୍ୱାରା ନଦୀର ଦୂଷିତ ପାଣି ବ୍ୟବହାରଯୋଗ୍ୟ ହେଇପାରେ ନାହିଁ । ପୂଜା ପାଉଥିବା ଦେବୀମୂର୍ତ୍ତି ଓ ପୂଜା ହେଇଥିବା ଫୁଲ-ଫଳ-ପତ୍ରକୁ ନଦୀରେ ପକାଇଦେଲେ ତାହା ଅଳିଆ ଭାବରେ ପରିଚିତ ହୋଇଥାଏ । ତାହାଦ୍ୱାରା ଜଳ ଓ ପରିବେଶ ଦୂଷିତ ହୁଏ । ଦେବଦେବୀଙ୍କ ମୂର୍ତ୍ତିରେ ଲେପ ଦିଆଯାଇଥିବା ରାସାୟନିକ ପଦାର୍ଥ ନଦୀଜଳରେ ମିଶି ପାଣିକୁ ବିଷାକ୍ତ କରିଦିଏ । ତାହାଦ୍ୱାରା ଅନେକ ଛୋଟଜୀବ ମରିଯାଆନ୍ତି । ମଣିଷମାନେ ବିଭିନ୍ନ ଚର୍ମରୋଗରେ ପୀଡ଼ିତ ହୁଅନ୍ତି । ଧର୍ମ ନାମରେ ବିକୃତ କାମକରି ସେମାନେ ସମାଜର ଅନେକ କ୍ଷତି କରନ୍ତି । ବିଭିନ୍ନ ନଦନଦୀକୁ ପୁଣି ସଫା କରିବ କିଏ ? ଏ ବିଷୟରେ ଆମେ ସଚେତନ ନ ହେଲେ ସମାଜର କ୍ଷତିହେଇ ଚାଲିଥିବ । ତେଣୁ ଆମକୁ ପିଲାବେଳୁ

ଏ ସମ୍ପର୍କରେ ସଚେତନ ହେବାକୁ ପଡ଼ିବ। ନିଜେ ଭଲରେ ରହି ଅନ୍ୟକୁ ଭଲରେ ରହିବାକୁ ଦେବାକୁ ହେଲେ, ଆମେ ଏବେଠାରୁ ଜାଣି ରଖିବା ଯେ, ଯାହାଦ୍ୱାରା ଆମର କ୍ଷତିହୁଏ, ସେଭଳି କାମ କରିବା ଉଚିତ ନୁହେଁ। ପରମ୍ପରା ନାମରେ ଆମେ ଅନ୍ଧପରି ବିକୃତ କାମ କରିବା ନାହିଁ। ନଦୀକୁ ସଫା ରଖିବା ଦିଗରେ ଆମର କିଛି ସହଯୋଗ ରହିବା ଦରକାର।

ପ୍ରତ୍ୟେକ ଜୀବଜନ୍ତୁ ମଳମୂତ୍ର ତ୍ୟାଗ କରନ୍ତି। ଏହାକୁ କେହି କେବେ ବନ୍ଦ କରିପାରିବ ନାହିଁ। ମଳମୂତ୍ରରୁ ଦୁର୍ଗନ୍ଧ ବାହାରେ। ସେଥିରେ ବିଭିନ୍ନ ରୋଗ ଜୀବାଣୁ ଭର୍ତ୍ତି ହୋଇଥା'ନ୍ତି। ଜୀବଜନ୍ତୁଙ୍କର କିଛି ଉପାୟ ନ ଥିବାରୁ ସେମାନେ ଯେଉଁଠି ପାରନ୍ତି ସେଇଠି ମଳମୂତ୍ର ତ୍ୟାଗ କରିବାକୁ ବାଧ ହୋଇଥା'ନ୍ତି। କିନ୍ତୁ ମଣିଷ ଭଳି ଜାଣିବା ବୁଝିବା ପ୍ରାଣୀମାନେ ଏଣେତେଣେ ଝାଡ଼ାପରିସ୍ରା କରିବା ଠିକକଥା ନୁହେଁ। କେତେଜଣ ଲୋକ ପୋଖରୀ ହୁଡ଼ା, ନଈକୂଳ ଏବଂ ରାସ୍ତାକଡ଼ରେ ଝାଡ଼ା ଯାଇଥା'ନ୍ତି। ସେଇ ମଳମୂତ୍ର ବର୍ଷାରେ ଧୋଇହୋଇ ନଈ, ପୋଖରୀ ଏବଂ ଗାଆଁ ଓ ସହରର ବିଭିନ୍ନ ସ୍ଥାନକୁ ଚାଲିଯାଏ। ତାହାଦ୍ୱାରା ଜଳ ଦୂଷିତ ହୁଏ। ବିଭିନ୍ନ ରୋଗ ବ୍ୟାପେ, ପରିବେଶ ଦୂଷିତ ହୁଏ।

ଆଗକାଳରେ ଲୋକସଂଖ୍ୟା ବହୁତ କମ୍ ଥିଲା। ଲୋକେ ଅଶିକ୍ଷିତ ଥିଲେ। ରୋଗର କାରଣ ଜାଣିପାରି ନ ଥିଲେ। ତେଣୁ ଖୋଲା ପଡ଼ିଆରେ ଲୋକେ ଝାଡ଼ା ଫେରୁଥିଲେ। ଏବେ ତ ଆଉ ଖୋଲା ପଡ଼ିଆ ନାହିଁ। ଲୋକେ ଶିକ୍ଷିତ ହେଲେଣି। ସମସ୍ତେ ରୋଗର କାରଣ ଜାଣିପାରୁଛନ୍ତି। ତେଣୁ ସମସ୍ତଙ୍କୁ ପାଇଖାନା ତିଆରି କରିବାକୁ ସରକାର କହୁଛନ୍ତି। ଯେଉଁମାନେ ପାଇଖାନା ତିଆରି କରିପାରୁ ନାହାନ୍ତି, ତାଙ୍କୁ ମଧ୍ୟ ସରକାର ଆର୍ଥିକ ସହାୟତା ଦେଉଛନ୍ତି। ଏବେ ବିଭିନ୍ନ ଗ୍ରାମାଞ୍ଚଳର ଲୋକେ ଘରପାଖରେ ପାଇଖାନା ତିଆରି କରିସାରିଲେଣି। ତଥାପି କେତେଜଣ ଲୋକ ଏମିତି ଅଛନ୍ତି ଯେ, ସେମାନେ ତାଙ୍କର ପୁରୁଣା ଅଭ୍ୟାସକୁ ଛାଡ଼ିପାରୁ

ନାହାନ୍ତି । ଘରେ ପାଇଖାନା ଥିଲେ ବି ସେମାନେ ଖୋଲା ପଡ଼ିଆରେ ଯାଇ ଝାଡ଼ା ଫେରୁଛନ୍ତି । ଏହା ଖୁବ୍ ଖରାପ ଅଭ୍ୟାସ । ସଭ୍ୟ ମଣିଷମାନେ କଦାପି ଖୋଲା ଜାଗାରେ ବା ସର୍ବସାଧାରଣ ଜାଗାରେ ମଳମୂତ୍ର ତ୍ୟାଗ କରିବା ଉଚିତ ନୁହେଁ ।

ଆମ ଦେଶର ବିଭିନ୍ନ ସହରରେ ବସ୍ତିମାନ ଗଢ଼ିଉଠୁଛି । ବିଭିନ୍ନ ଅଞ୍ଚଳରୁ ଲୋକେ ଆସି ଚାଳିମାରି, ଜରି ବାନ୍ଧି ଘରକରି ବଡ଼ ଅସ୍ୱାସ୍ଥ୍ୟକର ପରିବେଶରେ ରହୁଛନ୍ତି । ସେମାନେ ଯେଉଁଠି ଇଚ୍ଛା, ସେଇଠି ମଳମୂତ୍ର ତ୍ୟାଗ କରନ୍ତି । ଯାହା ଆବର୍ଜନା ପାଇଲେ, ତାକୁ ମନଇଚ୍ଛା ଆଖପାଖରେ ଫିଙ୍ଗିଦିଅନ୍ତି । ନାଳ ନର୍ଦ୍ଦମାର ଗନ୍ଧ, ଅପରିଷ୍କାର ପରିବେଶରେ ରହି ସେମାନେ ନିଜର ତଥା ଅନ୍ୟମାନଙ୍କର ପ୍ରଭୂତ କ୍ଷତି କରିଥା'ନ୍ତି । ତାଙ୍କୁ ଆକଟ କରିବାକୁ କେହି ନାହାନ୍ତି । ସେମାନଙ୍କ ପାଇଁ ସରକାର ପାନୀୟ ଜଳ ଯୋଗାଇ ଦିଅନ୍ତି । ପାଇଖାନା ବି ତିଆରି କରିଦିଅନ୍ତି । ସେଗୁଡ଼ିକ ପରିଷ୍କାର ପରିଚ୍ଛନ୍ନ ରଖି ଠିକ୍ ଭାବରେ ବ୍ୟବହାର କରିବା କାମ ହେଉଛି-ବସ୍ତିବାସିନ୍ଦାଙ୍କର । କିନ୍ତୁ ସେପରି ହୁଏନାହିଁ । ଫଳରେ ବସ୍ତି ସହିତ ସହରର ପରିବେଶ ଅସୁନ୍ଦର ଏବଂ ଗନ୍ଧଯୁକ୍ତ ହୋଇଯାଏ ।

ଆମ ଜାତିର ପିତା ମହାତ୍ମାଗାନ୍ଧି କହୁଥିଲେ -ସୁସ୍ଥ ପରିବେଶ ହିଁ ଆମକୁ ସୁସ୍ଥ ରଖିପାରିବ । ଅପରିଷ୍କାର ଓ ମଇଳାଠାରୁ ମୁକ୍ତି ପାଇବାଦ୍ୱାରା ହିଁ ଆମ ଦେଶର ଲୋକେ ରୋଗଠାରୁ ମୁକ୍ତି ପାଇପାରିବେ । ଏହା ମଧ୍ୟରେ ଅନେକ ବର୍ଷ ବିତିଗଲାଣି । ଆମେ ସ୍ୱାଧୀନ ଦେଶର ନାଗରିକ ଭାବେ ଗର୍ବ ଅନୁଭବ କରୁଛେ । ଶିକ୍ଷା, ସ୍ୱାସ୍ଥ୍ୟ ଓ ବିଚାର କ୍ଷେତ୍ରରେ ଆମେ ଆଗୁଆ ହୋଇସାରିଛେ । ଲୋକେ ପୂର୍ବାପେକ୍ଷା ଯଥେଷ୍ଟ ସଚେତନ ହୋଇସାରିଲେଣି । କିନ୍ତୁ ଆମ ପରିବେଶ ମଇଳାଠାରୁ ମୁକ୍ତି ପାଇପାରି ନାହିଁ । ଦିନକୁ ଦିନ ସହର ବଜାର ଓ ଗାଆଁରେ ଲୋକସଂଖ୍ୟା ବଢ଼ିବା ଫଳରେ ମଇଳା ଓ ଆବର୍ଜନାର ପରିମାଣ ବଢ଼ିଚାଲିଛି । ଆଜିର ଲୋକମାନେ ସିନା ଶିକ୍ଷିତ ହେଇଯାଇଛନ୍ତି; କିନ୍ତୁ ସବୁଠୁ ବେଶି ସ୍ୱାର୍ଥପର ହୋଇଯାଇଛନ୍ତି । ସେମାନେ ନିଜେ

ସଫାସୁତୁରା ରହିବା ଉଦ୍ଦେଶ୍ୟରେ ନିଜର ଅଳିଆ, ମଇଳା ଏବଂ ଆବର୍ଜନାକୁ ଉପଯୁକ୍ତ ସ୍ଥାନରେ ନ ପକାଇ ସୁବିଧା ଦେଖି ଏଣେତେଣେ ପକାଇ ଦିଅନ୍ତି। ସେହି ମଇଳା ଅନ୍ୟମାନଙ୍କୁ ବିଭିନ୍ନ ପ୍ରକାର ଅସୁବିଧାରେ ପକାଉଛି।

ଏବେ ଲକ୍ଷ୍ୟ କଲେ ଜଣାପଡୁଛି, ଆମ ଦେଶର ସବୁ ସହର ଏପରିକି ଗ୍ରାମାଞ୍ଚଳ ଅଳିଆ ଆବର୍ଜନାରେ ଭର୍ତ୍ତି ହୋଇଗଲାଣି। ନଦୀ, ପୋଖରୀ, ନାଳ, ରାସ୍ତାଘାଟରେ ଛିଣ୍ଡା ଜରି, ଅଦରକାରୀ ଜିନିଷ, ଆବର୍ଜନାରେ ଭର୍ତ୍ତି ହୋଇଗଲାଣି। ଏସବୁକୁ ସଫା କରିବ କିଏ ?

ସହରାଞ୍ଚଳରେ ପୌରସଂସ୍ଥାର ଯେଉଁ ସଫେଇ କର୍ମଚାରୀ ଅଛନ୍ତି, ସେମାନେ କ'ଣ ଏସବୁକୁ ପ୍ରତିଦିନ ସଫା କରିପାରିବେ? ନା- ତାହା କେବେ ବି ହୋଇପାରିବ ନାହିଁ। ତେଣୁ ଆମେ ସୁସ୍ଥ ରହିବା ସହିତ ଅନ୍ୟମାନଙ୍କୁ ସୁସ୍ଥରେ ରଖିବାପାଇଁ ନିଜ ପରିବେଶକୁ ସଫାସୁତୁରା ରଖିବା ଦରକାର।

ଆମଦେଶର ପ୍ରଧାନମନ୍ତ୍ରୀ ଏହିକଥାକୁ ଗୁରୁତ୍ୱଦେଇ ସ୍ୱଚ୍ଛଭାରତ ଅଭିଯାନ ଆରମ୍ଭ କରିଛନ୍ତି। ଏଥିରେ ସମସ୍ତଙ୍କୁ ଅଂଶଗ୍ରହଣ କରିବାକୁ ଅନୁରୋଧ କରିଛନ୍ତି। ନିଜେ ପ୍ରଧାନମନ୍ତ୍ରୀ ଝାଡୁଧରି ନାଳନର୍ଦ୍ଦମାକୁ ସଫା କରି ଉଦାହରଣ ସୃଷ୍ଟି କରିଛନ୍ତି। ତାଙ୍କୁ ଅନୁସରଣ କରି ବିଭିନ୍ନ ଶ୍ରେଣୀର ନେତା ଓ ମନ୍ତ୍ରୀ ମଧ୍ୟ ଝାଡୁଧରି ସର୍ବସାଧାରଣ ସ୍ଥାନରେ ସ୍ୱଚ୍ଛ ଭାରତ ଅଭିଯାନରେ ସାମିଲ ହେଇଛନ୍ତି। ସମସ୍ତ ସରକାରୀ କର୍ମଚାରୀଙ୍କୁ ସପ୍ତାହକୁ ମାତ୍ର ଦୁଇଘଣ୍ଟା ଏହି ସଫାସୁତୁରା କାର୍ଯ୍ୟରେ ସମୟ ଦେବାକୁ ପ୍ରଧାନମନ୍ତ୍ରୀ ଅନୁରୋଧ କରିଛନ୍ତି। ଏହି ଯୋଜନାରେ ଆମଦେଶର ସବୁ ବଡ଼ବଡ଼ ନଦୀଜଳକୁ ସଫା କରିବାପାଇଁ ଯୋଜନା ପ୍ରସ୍ତୁତ କରିଛନ୍ତି।

ଖୁସିର କଥା, ଦେଖିବାକୁ ମିଳୁଛି-ଏହି ଅଭିଯାନରେ ସଚେତନ ସାଧାରଣ ଲୋକେ ନିଜ ତରଫରୁ ବିଭିନ୍ନ ସ୍ଥାନ, ପୋଖରୀ ଏବଂ ନାଳନର୍ଦ୍ଦମାକୁ ସଫା କରୁଛନ୍ତି।

ଆମେମାନେ ଯଦି ସମସ୍ତେ ଏହି ସଫାସୁତର କାମରେ ଯୋଗଦାନ କରିବା, ତେବେ ଆମ ପରିବେଶ ନିଶ୍ଚୟ ସ୍ୱଚ୍ଛ ରହିପାରିବ। ଆମେମାନେ ମଧ୍ୟ ସୁସ୍ଥରେ ରହିପାରିବା।

ଆଜିର ବାର୍ଷିକ ଉତ୍ସବରେ ପିଲାଙ୍କପାଇଁ ମନୋରଞ୍ଜନ କାର୍ଯ୍ୟକ୍ରମ ରହିଛି। ତେଣୁ ମୁଁ ଏଇଠି ମୋର ବକ୍ତବ୍ୟକୁ ଶେଷ କରୁଛି। ମୋ କଥାକୁ ପିଲାମାନେ ମନେରଖବ, ଆସନ୍ତାକାଲି ସକାଳୁ ନିଜ ପରିବେଶକୁ ସଫାସୁତର କରିବା ଦିଗରେ କାମ ଆରମ୍ଭ କରିଦେବ ବୋଲି ମୋର ବିଶ୍ୱାସ । ଧନ୍ୟବାଦ ।"

ମୁଖ୍ୟଅତିଥିଙ୍କ ଭାଷଣ ଶେଷରେ ପିଲାମାନେ ତାଳିମାରି ତାଙ୍କକଥାକୁ ସମର୍ଥନ ଜଣାଇଲେ।

ବିଦ୍ୟାଳୟର ବିଜ୍ଞାନ ଶିକ୍ଷକ ମୁଖ୍ୟଅତିଥିଙ୍କୁ ଧନ୍ୟବାଦ ଜଣାଇ କହିଲେ - "ପିଲାମାନେ, ଆଜିର ମୁଖ୍ୟଅତିଥି ମହୋଦୟ ସାମାନ୍ୟ ଗୋଟିଏ ଶବ୍ଦ ମଇଳାର ଅର୍ଥ ଆମମାନଙ୍କୁ ପଚାରିଥିଲେ। ସେହି ଶବ୍ଦରୁ କେତେକଥା, କେତେବ୍ୟଥା ବାହାରିଲା । ସେ ଆମକୁ ସ୍ୱାସ୍ଥ୍ୟରକ୍ଷାପାଇଁ କିଭଳି ଅଳିଆ ଆବର୍ଜନାଠାରୁ ଦୂରେଇ ରହିବାକୁ ପଡ଼ିବ, ସେକଥା ଅତି ସରଳ ଭାଷାରେ ବୁଝାଇଦେଲେ। ତୁମେମାନେ ଏଇ ଛୋଟ ବୟସରୁ ଯଦି ମଇଳା ସଫା କରିବା ଅଭ୍ୟାସ କରିନେବ, ତେବେ ଭବିଷ୍ୟତରେ ଆମର ପରିବେଶ ସଫା ଆଉ ସୁନ୍ଦର ହେଇ ରହିପାରିବ । ଆଜି ଆମେ ସମସ୍ତେ ଶପଥ ନେବା, ଆମର ପରିବେଶକୁ ସଫାସୁତର ରଖି ନିଜେ ସୁସ୍ଥ ରହିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ସୁସ୍ଥ ଓ ନିରୋଗ ରଖିପାରିବା।

କେଉଁମାନେ ଏକଥାକୁ ସମର୍ଥନ କରୁଛ, ଉପରକୁ ହାତ ଟେକ।"

ବିଜ୍ଞାନ ଶିକ୍ଷକଙ୍କ କଥା ଶୁଣି ଉପସ୍ଥିତ ଥିବା ସମସ୍ତ ପିଲା ହାତ ଟେକିଦେଲେ । ସମସ୍ତଙ୍କୁ ଧନ୍ୟବାଦ ଜଣାଇ ସେ ପୁଣି କହିଲେ - "ପିଲାମାନେ, ତୁମମାନଙ୍କଠାରୁ

ଏବେ ବଡ଼ମାନେ ନିଶ୍ଚୟ ଶିକ୍ଷାଲାଭ କରିବେ । ଦେଖିବ, ତମକୁ ସମସ୍ତେ ଧନ୍ୟ ଧନ୍ୟ କହିବେ। କୌଣସି କାମ ଛୋଟ ନୁହଁ। ତେଣୁ ଲଜ୍ଜା ନ କରି ନିଜପାଇଁ ତଥା ଅନ୍ୟମାନଙ୍କପାଇଁ ଆମେ କାଲି ସକାଳେ ଗୋଟାଏ ଲେଖା ଝାଡୁଧରି ଆଗ ଆମ ସ୍କୁଲର ପରିସରକୁ ସଫା କରିବା।”

ଶେଷରେ ପ୍ରଧାନଶିକ୍ଷକ ଠିଆହୋଇ ସମସ୍ତଙ୍କୁ ଧନ୍ୟବାଦ ଜଣାଇ କହିଲେ- “ପିଲାମାନେ, ବର୍ତ୍ତମାନ ଆମର ସଭାକାର୍ଯ୍ୟ ଶେଷ ହେଲା। ପରିବେଶ ସୁରକ୍ଷା ସମ୍ପର୍କରେ ଆମସ୍କୁଲର ପିଲାମାନେ ଗୋଟାଏ ନାଟକ ଶିଖିଛନ୍ତି, ତାକୁ ପରିବେଷଣ କରିବେ। ସମସ୍ତେ ତାକୁ ଉପଭୋଗ କର। ସେଥିରୁ ଯାହା ଶିଖିବ, ତାକୁ କାମରେ ଲଗାଇବ।

ସଭା ଶେଷରେ ପିଲାମାନେ ତାଳିମାରି ସଭାସ୍ଥଳକୁ କମ୍ପାଇ ଦେଲେ।



# ମାଙ୍କଡ଼ ଫେରିଲେ ନିଜ ଘରକୁ

ଜଙ୍ଗଲରେ ଗୋଟାଏ ମାଙ୍କଡ଼ ପରିବାର ରହୁଥିଲେ। ଥରେ ଖରାଦିନେ ଜଙ୍ଗଲରେ ନିଆଁ ଲାଗିଗଲା। ସେମାନେ ଭାବିଲେ ଏ ବଣରାଜ୍ୟରେ ରହି ଆମେ ଭାରି ଦୁଃଖରେ ଅଛୁ। ଗାଆଁ ଓ ସହରର ମଣିଷ ବହୁତ ଭଲରେ ଅଛନ୍ତି। ସେଠାରେ ବିଭିନ୍ନ ଫଳ ଫୁଲୁରି ମିଳେ। ସୁଆଦିଆ ଜିନିଷ ସେଠାରେ ଖାଇବାକୁ ମିଳିବ। ଆମେ ସମସ୍ତେ ଗାଆଁ କି ସହରକୁ ଚାଲିଯିବା। ସେଇଠି ଖାଇପିଇ ମଜାରେ ରହିବା। ସହରରେ ଚିଡ଼ିଆଖାନାରେ ଥିବା ପଶୁମାନେ କେମିତି ଅଛନ୍ତି ତାଙ୍କୁ ବି ଦେଖି ଆସିବା। ମାଙ୍କଡ଼ ପିଲାମାନେ ତାଙ୍କ ବାପାଙ୍କ କଥା ଶୁଣି ଖୁସି ହେଇଗଲେ। ସକାଳୁ ସକାଳୁ ସେମାନେ ଜଙ୍ଗଲ ଛାଡ଼ି ଦୂରରେ ଥିବା ଗାଆଁ ଭିତରେ ପଶି ପନିପରିବା, ଫଳମୂଳ ଖାଇଲେ। ଗାଆଁଲୋକେ ମିଳିତ ଭାବରେ ଠେଙ୍ଗା-ବାଡ଼ି ଧରି ଗୋଡ଼େଇ ପିଟିଲେ। ବାଟୁଳି ଖଡ଼ା ଧରି ଆକ୍ରମଣ କଲେ।

ଜୀବନ ବିକଳେ ମାଙ୍କଡ଼ମାନେ ସହରକୁ ଚାଲିଗଲେ। ସହରରେ ଥିବା ଲୋକମାନେ ବନ୍ଧୁକ ଧରି ତାଙ୍କ ଆଡ଼କୁ ଦେଖେଇ ଗୁଳି ଫୁଟେଇ ଘଉଡ଼େଇଲେ। କିଛି ଉପାୟ ନପାଇ ସେମାନେ ଭାବିଲେ, ମଣିଷ ଗୁଡ଼ାକ ଭାରି ଦୁଷ୍ଟ। ଆମର ପଶୁମାନେ ବରଂ ତାଙ୍କଠାରୁ ବହୁତ ଭଲ। ସହର ପାଖରେ ଥିବା ବଣକୁ ଗଲେ ସେଇଠି ପଶୁମାନଙ୍କ ସହିତ ମିଶି ରହିବା। ତାଙ୍କ ସହିତ ମିଶି ଖିଆପିଆ କରିବା। ସେମାନେ ଆମକୁ ଶତ୍ରୁ ମନେ କରିବେ ନାହିଁ। ଏଣେତେଣେ ବୁଲିବୁଲି ଶେଷରେ ସେମାନେ ଗୋଟାଏ ଚିଡ଼ିଆଖାନା ପାଖରେ ପହଞ୍ଚିଗଲେ। ସେଠାରେ ଥିବା ପଶୁ-ପକ୍ଷୀମାନଙ୍କ ପାଖକୁ ଯାଇ କେତେ କଣ ଭାବିଲେ। ଜନ୍ତା ଭିତରେ ଥିବା ବାଘକୁ ଦେଖି ତାଙ୍କୁ ହସ ମାଡ଼ିଲା। ପାଖରେ ଥିବା ଗଛ ଉପରେ ବସି ତାଙ୍କ ଆଡ଼କୁ ଦେଖେଇ ଖତେଇହେଲେ। ବାଘମାନେ ତାଙ୍କୁ ଦେଖି ରାଗରେ ଗର୍ଜନକରି

ଗୋଡ଼େଇ ଆସିଲେ। ଛୋଟ ମାଙ୍କଡ଼ଟାଏ ଲୁଚିଲୁଚି ଯାଇ ଗୋଟାଏ ବାଘର ଲାଞ୍ଜକୁ ଟାଣିଦେଇ ଗଛ ଉପରକୁ ଚଢ଼ିଗଲା।

ବାଘ କହିଲା- ହଇରେ ଚଗଲା ! ମୁଁ ଜନ୍ତାରେ ଅଛି ବୋଲି ତୁ ସାହସ କରି ମୋ ଲାଞ୍ଜକୁ ଟାଣିଦେଲୁ। ରହ ରହ ମୁଁ ଜନ୍ତାରୁ ବାହାରେ, ତମ ମାଙ୍କଡ଼ମାନଙ୍କୁ ମୁଁ ଭଲକି ପାନେ ଦେବି ଦେଖିବୁ।

ମାଆ ମାଙ୍କଡ଼ କହିଲା-ପଳେଇ ଚାଲରେ, ବାଘମାମୁ ରାଗିଗଲାଣି। ସେ ବଣରେ ଆମକୁ ଧରି ମାରିଦେବ।

ମାଙ୍କଡ଼ମାନେ ଦୌଡ଼ାଦୌଡ଼ିହେଇ ସେଠାରୁ ପଳାଇ ଗଲେ। ଅଳ୍ପଦୂରରେ ସେମାନେ ଭାଲୁ ରହିଥିବା ଜନ୍ତା ଦେଖିଲେ। ଭାଲୁମାନଙ୍କ ପାଖରେ ପହଞ୍ଚି ବୁଢ଼ା ମାଙ୍କଡ଼ କହିଲା- କଣ ଭାଲୁ ମାଉସୀ ! ଜନ୍ତା ଭିତରେ କେମିତି ଅଛ ? ତମର ଲମ୍ବାଲମ୍ବା ଲୋମକୁ ଟିକେ ଟାଣିବାକୁ ଆମର ଇଚ୍ଛା ହେଉଛି। ଟିକେ ଆମ ପାଖକୁ ଆସିଲ। ମୋର ପିଲାମାନେ ତମକୁ ଟିକେ ପାଖରୁ ଦେଖିବେ।

ଭାଲୁଟା ମାଙ୍କଡ଼ମାନଙ୍କ ଗୁଣକୁ ଜାଣେ। ତାର ମନେ ପଡ଼ିଗଲା, ଏମାନେ ଗଛଡାଳରେ ଝୁଲିରହି ଆଗରୁ କେତେଥର ତା ମୁଣ୍ଡର ଲମ୍ବାବାଳକୁ ଝିଙ୍କି ପକେଇଛନ୍ତି। ଦୁଷ୍ଟ ମାଙ୍କଡ଼ପଲ ଏବେ ପୁଣି ବଣରୁ ଆସି ଚିଡ଼ିଆଖାନାରେ ପଶିଲେଣି। ତାଙ୍କର ପୁଣି ଏତେ ସାହସ ! ମୁଁ ଜନ୍ତାରେ ଅଛି ବୋଲି ସେ ମୋ ବାଳ ଟାଣି ଖେଳିବାକୁ କହୁଛି। ଏମାନଙ୍କୁ ଦେବି ଯେ ପାନେ, ଆଉ କେବେ ଏଠିକି ଆସିବେ ନାହିଁ। ଏମିତି ଭାବିଭାବି ମୋଟାଭାଲୁଟା ଧୀରେ ଧୀରେ ଆସି ତାଙ୍କ ପାଖରେ ଠିଆହେଲା। ମାଙ୍କଡ଼ଛୁଆଟି ଦଉଡ଼ି ଯାଇ ତା ଲମ୍ବାବାଳକୁ ଧରିବାକୁ ହାତ ବଢ଼େଇଦେଲା। ରାଗିଥିବା ଭାଲୁ ଜୋର କରି ଫଁ କରିଦେଲା। ତା ମୁହଁରୁ ପୁଳାଏ ବିଷାକ୍ତ ଫେଣ ମିଶା ଛେପ ବାହାରି ମାଙ୍କଡ଼ଛୁଆ ମୁହଁରେ ପଡ଼ିଗଲା। ସବୁ ମାଙ୍କଡ଼ ଜୀବନ ବିକଳେ ସେଇଠୁ ଦୌଡ଼ି ପଳାଇଗଲେ।

ଦୁଷ୍ଟ ମାଙ୍କଡ଼ମାନେ ସେଇଠୁ ଯାଇ ପକ୍ଷୀମାନେ ରହୁଥିବା ଚଢ଼େଇଘର ପାଖକୁ ଗଲେ। ଜାଲି ଦିଆଯାଇଥିବା ବଡ଼ ଚଢ଼େଇଘର ଭିତରେ ଅନେକ ପ୍ରକାର ଚଢ଼େଇ ମନଦୁଃଖ କରି ବସିଥିଲେ। ମାଙ୍କଡ଼ମାନେ ହୁଁକାର ମାରି ତାଙ୍କୁ ଜାଗ୍ରତ କରିଦେଲେ। ବଡ଼ ମାଙ୍କଡ଼ମାନେ ଛୁଆମାନଙ୍କୁ କହିଲେ-

ଏଇ ପକ୍ଷୀମାନେ ଆମକୁ ବଣରେ ଭାରି ହଇରାଣ କରନ୍ତି। ତାଙ୍କ ବସା ପାଖକୁ ଗଲେ, ଏମାନେ ଆମକୁ ତାଙ୍କ ଥଣ୍ଟରେ ଖୁମ୍ପି ଘଉଡ଼େଇ ଦିଅନ୍ତି। ସବୁଠାରୁ ବଡ଼ ଦିଶୁଥିବା ପକ୍ଷୀ ଶାଗୁଣା ଆଉ ଛଞ୍ଚାଣମାନେ ଆମ ମୁଣ୍ଡକୁ କାମୁଡ଼ି ଖଣ୍ଡିଆ ଖାବରା କରିପକାନ୍ତି। ଚିଲ ହେଉଛି ସବୁଠାରୁ ଦୁଷ୍ଟପକ୍ଷୀ। ସେମାନଙ୍କୁ ଜାଲି ଭିତରେ ରଖି ମଣିଷ ଠିକ୍ କରିଛି।

ତାଙ୍କକଥା ଶୁଣି ଛଞ୍ଚାଣ ରାଗିଗଲା। ସେ ଆଖି ବଡ଼ବଡ଼ କରି ମାଙ୍କଡ଼ମାନଙ୍କୁ ଚାହିଁ ରହିଲା। ମାଙ୍କଡ଼ଛୁଆ ତାକୁ ଚାହିଁ କହିଲା-ଛଞ୍ଚାଣ ଭାଇ! ଜାଲିଘର କେମିତି ଲାଗୁଛି ? ଆମ ପାଖକୁ ଟିକେ ଆସ, ମୁଁ ତମକୁ ଆଉଁସି ଦେବି।

ଛଞ୍ଚାଣ ତ ଆଗରୁ ରାଗି ରହିଥିଲା, ସେ ଚଟ୍‌କରି ଉଡ଼ିଆସି ମାଙ୍କଡ଼ଛୁଆ ମୁହଁକୁ ତା ଧାରୁଆ ବଙ୍କା ଥଣ୍ଟରେ ଖୁମ୍ପି ପକାଇ ପୁଳାଏ ମାଂସ ନେଇଗଲା। ଧାରଧାର ରକ୍ତ ଦେଖି ମାଙ୍କଡ଼ଛୁଆମାନେ ଜୀବନ ନେଇ ସେଠାରୁ ପଳାଇଗଲେ। ଅନ୍ୟ ପକ୍ଷୀମାନେ ମାଙ୍କଡ଼ଛୁଆର ଅବସ୍ଥାକୁ ଦେଖି ଖୁସିହେଲେ।

ଶାଗୁଣା କହିଲା- ଛଞ୍ଚାଣ ଭାଇ! ବଦମାସକୁ ତମେ ଠିକ୍ ଶାସ୍ତି ଦେଇଛ। ସେ ଆଉ କେବେ ଆମ ପାଖକୁ ଆସିବ ନାହିଁ।

ଏଥର ମାଙ୍କଡ଼ମାନେ ଚିଡ଼ିଆଖାନା ଛାଡ଼ି ଏକମୁହାଁହେଇ ନିଜ ଜଙ୍ଗଲ ଆଡ଼କୁ ଧାଇଁଲେ। ବାଟରେ ସେମାନେ ଯେଉଁଠି ଯାହା ଦେଖିଲେ, ତାକୁ ଖାଇଖାଇ ଯାଉଥିଲେ। କେତେଜାଗାରୁ କେତେଥର ସେମାନେ ଟେକା-ପଥର ମାଡ଼ ଖାଇଲେ, ତାର ହିସାବ ନାହିଁ। ବାଟୁଳିଖଡ଼ାର ମାଡ଼ରେ ସେମାନେ ଘାଇଲା ହେଇଯାଇଥିଲେ। ମାଙ୍କଡ଼ଛୁଆର ବାପା କହିଲା-ଆରେ! ଆମବଣର ପଶୁଙ୍କଠାରୁ ଏ ମଣିଷମାନେ ତ ବେଶି ବିପଦଜନକ। ସେମାନଙ୍କ ପାଖରେ ବନ୍ଧୁକ ବି ଅଛି। ରାଗିଗଲେ ସେମାନେ ଗୁଳି ଫୁଟେଇ ଆମକୁ ମାରି ପକେଇବେ। ଆଉକେବେ ସହର କି ଗାଆଁକୁ ଯିବାନାହିଁ। ଯେତେକଷ୍ଟ ହେଇପଛେ, ଆମେ ଏଇ ବଣରେ ରହିବା।

ସେମାନେ ବଣରେ ପହଞ୍ଚି ଆଗ ବାଘମାମୁକୁ ଭେଟି ତା ଆଗରେ ସବୁକଥା କହିଲେ। ବାଘମାମୁ କହିଲା-ଚିଡ଼ିଆଖାନାରେ ଯେଉଁ ପଶୁପକ୍ଷୀମାନେ ବନ୍ଦୀହେଇ ରହିଛନ୍ତି, ସେମାନଙ୍କୁ

ମଣିଷମାନେ ହିଁ ବାନ୍ଧି ରଖିଛନ୍ତି। ମଣିଷ ଭଳି ସ୍ୱାର୍ଥପର ଜୀବ ଏ ସୃଷ୍ଟିରେ ଆଉ କେହିନାହିଁ। ତାଙ୍କ ପାଖରେ ରହିରହି ଚିଡ଼ିଆଖାନାରେ ଥିବା ବଣର ପଶୁପକ୍ଷୀମାନେ ବି ହିଂସ୍ରହେଇ ଯାଇଛନ୍ତି। ମଣିଷର ଖରାପ ଗୁଣ ତାଙ୍କଠାରେ ପ୍ରକାଶ ପାଇଲାଣି। ସେଇଥିପାଇଁ ସେମାନେ ତମକୁ ଏମିତି ମାରି ଗୋଡ଼େଇଲେ।

ଆମର ଏଇ ଜଙ୍ଗଲର ରାଜା ସିଂହ ହେଉ କି ମୋ ଭଳି ଶକ୍ତିଶାଳି ଅନ୍ୟ ବାଘମାନେ ହୁଅନ୍ତୁ, କେହି କେବେ ଅଧିକ ପଶୁ ଶିକାର କରନ୍ତି ନାହିଁ। ଯଦି ଆମ ପେଟ ପୂରିଛି, ତେବେ ହରିଣ କି ଠେକୁଆ ଆସି ଆମ ଆଗରେ ଠିଆ ହେଲେ ବି ଆମେ ତାକୁ ବିନା କାରଣରେ ମାରୁନା। ଆମେ ମାଂସାସୀ ପ୍ରାଣୀ ହେଇଥିବାରୁ ଖାଦ୍ୟପାଇଁ ପଶୁ ଶିକାର କରିଥାଉ। ସବୁ ପଶୁପକ୍ଷୀ ଆମର ପ୍ରିୟ। ସେମାନେ ଥିବାରୁ ଆମେ ବଞ୍ଚି ରହିପାରିଛୁ। ସେମାନେ ସବୁ ମରିଗଲେ, ଆମେ ବି ଖାଦ୍ୟ ଅଭାବରୁ ମରିଯିବୁ। ସେଥିପାଇଁ ଆମେ ଲୋଭକରି ଅଧିକ ଜୀବ ଶିକାର କରୁନା। କିନ୍ତୁ ମଣିଷ ସେକଥା ବୁଝେନା। ଦରକାର ନଥିଲେ ବି ସେ ଲୋଭରେ ହେଉ କି ବଦମାସୀରେ ହେଉ, ସେ ଅନ୍ୟ ଜୀବମାନଙ୍କୁ ଶିକାର କରେ। ତମେମାନେ ଆମ ସହିତ ବଣରେ  ଫଳମୂଳ ଆଉ କଅଁଳପତ୍ର ଖାଇ ମଜାରେ ରୁହ। ମଣିଷ ପାଖକୁ ମୋଟେ ଯାଅନାହିଁ। ଏଇଠି ତମେ ମଜାରେ ରହିପାରିବ।

ବାଘମାମୁର କଥାଶୁଣି ମାଙ୍କଡ଼ଛୁଆ ତା ମାଆକୁ କହିଲା-ବାଘମାମୁଙ୍କ କଥା ସତ।  ଆମେ ଆଉକେବେ ସହର କି ଗାଆଁକୁ ଯିବାନାହିଁ। ଆମର ଏଇ ଜଙ୍ଗଲ ହେଉଛି, ଆମପାଇଁ ସ୍ୱର୍ଗ । ଏଇଠି ଆମେ ନିରାପଦରେ ପୁଣି ସ୍ୱାଧୀନ ଭାବରେ ଚରାବୁଲା କରିପାରୁଛୁ। ଜଙ୍ଗଲ ହେଉଛି, ଆମପାଇଁ ସବୁଠୁ ବେଶି ଭଲଜାଗା। ଆମେ ଆଉ କେବେ ଆମ ଜଙ୍ଗଲକୁ ଛାଡ଼ି ସହରକୁ କି ଗାଆଁକୁ ଯିବାନାହିଁ।



# ବଣକୁକୁଡ଼ା ଉଡ଼ା ଶିଖିଲେ

ଗୋଟାଏ ଛୋଟିଆ ପାହାଡ଼ । ପାହାଡ଼ ତଳକୁ ଲାଗି ଲମ୍ବିଯାଇଛି ଜଙ୍ଗଲ । ସେଇ ଜଙ୍ଗଲରେ କେତେ ପଶୁ-ପକ୍ଷୀ ରହନ୍ତି । ଗୁମ୍ଫାରେ ବାଘ, ଭାଲୁ ଓ ସିଂହମାନେ ବିଶ୍ରାମ ନିଅନ୍ତି । ବୁଦାମୂଳେ ବିଲୁଆ, ଗଧିଆ,ହରିଣ ଠେକୁଆ ଓଧ ଓ ନେଉଳପରି ଜୀବମାନେ ଲୁଚି ରହନ୍ତି । ଚଢେଇମାନେ ତ ମଜାରେ ଗଛ ଉପରେ ବସାବାନ୍ଧି ରହନ୍ତି । କିନ୍ତୁ ବଣ କୁକୁଡ଼ାଟି ଭାରି ହଇରାଣ ହୁଏ । ସେ ଟିକେ ମୋଟା ହେଇଥିବାରୁ ଭଲକରି ଉଡ଼ିପାରେନାହିଁ କି ଗଛ ଉପରେ ବସାବାନ୍ଧି ରହିପାରେନାହିଁ । ଏଣେ ବୁଦାମୂଳେ ତ ବିଲୁଆ ଗଧିଆ, ବଣ ବିରାଡ଼ି ଲୁଚି ରହନ୍ତି । ସେ କେମିତି କେଉଁଠି ନିରାପଦରେ ବସାବାନ୍ଧି ଅଣ୍ଡାଦେବ ? ସମସ୍ତେ ତ ତାକୁ ଖାଇବାକୁ ଜଗିଛନ୍ତି । ସେ କାହାର କିଛି କ୍ଷତି କରେନାହିଁ ସିନା, କିନ୍ତୁ ସମସ୍ତେ ତା'ର ଶତ୍ରୁ । ତେଣୁ ସେ ଗହଳିଆ ଲଟା ଭିତରେ ଉଚ୍ଚଜାଗା ଦେଖି ବସା ବାନ୍ଧି ସେଥିରେ ଅଣ୍ଡାଦେଇଥିଲା ।

ସେଥିରୁ ଛୁଆଫୁଟି ଚିଁ ଚାଁ କଲେ । ବଣବିରାଡ଼ି ଓ କଟାସଙ୍କ କାନରେ ସେ ଶବ୍ଦ ଶୁଣାଗଲା । ଦିନେ କଟାସ ଶୁଙ୍ଘିଶୁଙ୍ଘି ଆସି ଗୋଟାଏ ଛୁଆକୁ ନେଇ ଖାଇଦେଲା । ତା'ପରଦିନ ବିଲୁଆଟା ଆସି ଆଉ ଦୁଇଟା ଛୁଆଙ୍କୁ ନେଇ ଚାଲିଗଲା । ବିଚାରି କୁକୁଡ଼ା ତା'ର ଅନ୍ୟ ଛୁଆମାନଙ୍କୁ କେମିତି କେଉଁଠି ନିରାପଦରେ ରଖିବ, ସେଇ ଚିନ୍ତାରେ ବସି ବହୁତ କାନ୍ଦିଲା । ତା'ର କାନ୍ଦ ଶୁଣି କାଉଟିଏ ଆସି ତା'ପାଖରେ ପହଞ୍ଚିଲା । ତା'ଦୁଃଖକଥା ଶୁଣି ଆଃ ଛୁ ଚୁ କଲା । ଏଣେ କୁକୁଡ଼ାଛୁଆଙ୍କୁ ଦେଖି ତା'ପାଟିରୁ ଲାଳ ବୋହିଲା । କେଡ଼େ ଛନଛନିଆଁ ହେଇଛନ୍ତି ମ ! ନରମ ନରମ କଅଁଳ ମାଉଁସକୁ ଛିରି ଫାଡ଼ି ଖାଇବାକୁ ଭାରି ମଜା ଲାଗନ୍ତା । ସେ ଆଗରୁ ଜାଣିଛି ମାଆ କୁକୁଡ଼ାଟା ଭାରି ରାଗି । ତା'ନଖ ଆଉ ପଞ୍ଝା ଭାରି ଟାଣ । ତା'ପାଖରୁ ଛୁଆଙ୍କୁ ଛୁଆଟିକୁ ଛଡ଼େଇ ନେବା ଏତେ ସହଜ ନୁହଁ । ତେଣୁ ସେ କପଟକରି

କହିଲା- "କୁକୁଡ଼ାନାନୀ ! ଏ' ଜାଗାଟା ତୋ ପାଇଁ ମୋଟେ ନିରାପଦ ନୁହଁ। କଟାସ ବିଲୁଆଙ୍କୁ ମୋଟେ ବିଶ୍ୱାସ ନାହିଁ। ସେମାନେ ଦୟା ମାୟା ବୋଲି କିଛି ଜାଣନ୍ତି ନାହିଁ। ତୋ ଦୁଃଖକଥା ଶୁଣି ଆଉ ତୋ ଛୁଆମାନଙ୍କୁ ଦେଖି ମୁଁ ଆଉ ସହି ପାରୁନାହିଁ। ମୁଁ ଗୋଟାଏ ନିରାପଦ ଜାଗା ଦେଖିଛି। ତତେ ଦେଖେଇଦେବି। ସେଇଠି ତୋ ଛୁଆମାନେ ନିରାପଦରେ ରହିପାରିବେ। ସେ ଜାଗାକୁ ବିଲୁଆ କି କଟାସ କେହି ଯାଇପାରିବେ ନାହିଁ। କିନ୍ତୁ ଗୋଟାଏ କଥା, ସେଥିପାଇଁ ମୋତେ ଗୋଟାଏ ଛୁଆ ଆଗ ଖାଇବାକୁ ଦେବୁ ତ ?"

କାଉର କପଟ କଥା ଆଉ ଛୁଆ ଖାଇବାର କୌଶଳ କଥା ଜାଣିପାରି ମାଆ କୁକୁଡ଼ା ତା'ର ଆଖିକୁ ଲାଲ କରି କହିଲା- "ଆରେ କପଟିଆ କାଉ ! ତୁ ହେଉଛୁ ପକ୍ଷୀଜାତିର କଳଙ୍କ। ମିଛୁଆ ଅଇଁଠା ଖିଆ ଠକ। ସେଇଥିପାଇଁ ପରା ଭଗବାନ ତତେ ଏମିତି ଅସୁନ୍ଦର କରି ଗଢ଼ିଛନ୍ତି। ତୋ ଗୁଣକୁ ଦେଖି ତୋର ଗଳା କର୍କଶ ହେଇଛି। ପକ୍ଷୀମାନଙ୍କ ଅଣ୍ଡା ଖାଇଯାଉ ବୋଲି ତତେ ସମସ୍ତେ କାମୁଡ଼ି ଗୋଡ଼ାନ୍ତି। ଆସିଛୁ ମୋତେ ସାହାଯ୍ୟ କରିବାକୁ ନା ଛୁଆ ଖାଇବାକୁ ? ମୁଁ ମରିଗଲେ ମରିଯିବି ସିନା ମୋ ଛୁଆକୁ ତତେ ଦେବିନାହିଁ। ଯା'- ଶୀଘ୍ର ଏଠୁ ପଳା। ନହେଲେ, ମୋ ପଞ୍ଝାରେ ତୋ ଅବସ୍ଥା କଣ କରିବି, ତୁ ଜାଣିପାରିବୁ ନାହିଁ। ଦେଖିବୁ ନା ଏଠୁ ଯିବୁ ?"

ଚତୁର କାଉର କପଟବୁଦ୍ଧି କୁକୁଡ଼ା ପାଖରେ ମୋଟେ କାମ ଦେଲାନାହିଁ। ସେ ତା'ର ନାଲି ଆଖିକୁ ଦେଖି ଡରିଗଲା। ଭୟରେ ସେଇଠୁ ଉଡ଼ି ବହୁତ ଦୂରକୁ ପଳାଇଗଲା।

ସେଇ ଗଛଡାଳରେ ବସିଥିବା ଚୁଇଁ ଚଢେଇଟି କୁକୁଡ଼ା ମାଆର ଦୁଃଖକଥା ଶୁଣିଥିଲା। ସେ ତା' ପାଖକୁ ଆସି କହିଲା-"ନାନୀ ! ଆମ ପକ୍ଷୀକୁଳରେ ବହୁତ ଦୁଷ୍ଟ ବଦମାସ ଅଛନ୍ତି। ଚିଲକୁ ତ ଆମର ପ୍ରାଣେଭୟ। କାଉଟା ସବୁଠାରୁ ବଦମାସ। ସେ ପରା ମୋ ବସାକୁ ଭାଙ୍ଗି ଦେଇଯାଇଛି। ତା କଥାକୁ ବିଶ୍ୱାସ ନକରି ତୁ ଭଲ କରିଛୁ। ମିଛୁଆ ଠକମାନେ ବିପଦବେଳେ ସାହାଯ୍ୟ କରିବା ଆଳରେ ପାଖକୁ ଆସି ସର୍ବନାଶ କରନ୍ତି। ଯଦି କାହାର ଆଶ୍ରା ନେବାକୁ ପଡ଼ିବ ତ ତେବେ ଆମେ ବଡ଼ପକ୍ଷୀ କିମ୍ବା ବୁଦ୍ଧିମାନ ପକ୍ଷୀ ପାଖକୁ ଯିବା। ଆମ ପକ୍ଷୀମାନଙ୍କ ଭିତରେ ରଜା ହେଉଛି ମୟୂର। ସେ

ସବୁଠାରୁ ଉଚ୍ଚ ଗଛର ଅଗରେ ବସିଥାଏ। ଚାଲ ତା'ପାଖକୁ ଯାଇ ତୋର ଦୁଃଖ ଜଣେଇବା। ସେ ନିଶ୍ଚୟ ଆମକୁ ଭଲ ଉପାୟ ବତେଇଦେବ।"

ଚୁଇଁ ଚଢେଇ କଥା ଶୁଣି କୁକୁଡ଼ା ମନରେ ମୟୂର ପ୍ରତି ଭରସା ଆସିଲା। ସେ ମୟୂର ପାଖରେ ନିଜର ଦୁଃଖ ଜଣେଇଲା। ତା'ଛୁଆମାନେ କେମିତି ନିରାପଦରେ ବଞ୍ଚି ରହିପାରିବେ, ତା'ର ଉପାୟ ବତେଇ ଦେବାକୁ ଅନୁରୋଧ କଲା।

ମୟୂରରଜା ସବୁକଥା ଶୁଣି କହିଲା-"ଏଇ ଗୋଟାଏ କଥା ! ନିର୍ବୋଧ ଆଉ ଅଳସୁଆମାନେ ସବୁଠି ହଇରାଣ ହେଇ କଷ୍ଟ ପାଆନ୍ତି। ଏଇ ସଂସାରରେ ଏମିତି କୌଣସି ଜାଗାନାହିଁ, ଯେଉଁଠି ବଦମାସ ଦୁଷ୍ଟଜୀବ ନଥିବେ। ସବୁଠି ଶତ୍ରୁ ଲୁଚି ରହିଛନ୍ତି। ଆମକୁ ସତର୍କହେଇ ନିଜ ବୁଦ୍ଧିବଳରେ ବଞ୍ଚି ରହିବାକୁ ପଡ଼ିବ। ତମେ ହେଲ ତୁମମାନଙ୍କର ଡେଣା ଅଛି, ପକ୍ଷୀ ଅଛି ସତ; କିନ୍ତୁ ତୁ ଅନ୍ୟମାନଙ୍କ ପରି ଉପରକୁ ଉଡ଼ିବାକୁ ଇଚ୍ଛା କରୁନା। ତେଣୁ ହିଂସ୍ରପଶୁମାନେ ତମକୁ ଗୋଡ଼େଇ ଗୋଡ଼େଇ ଧରିପକାନ୍ତି। ତେଣୁ ତମକୁ ବଞ୍ଚିବାର କୌଶଳ ଶିଖିବାକୁ ପଡ଼ିବ। ଏବେଠାରୁ ଛୁଆମାନଙ୍କୁ ଅଧିକ ପରିଶ୍ରମ କରିବା ଶିଖାଇବୁ। ସେମାନେ ଯେମିତି ଅଧିକ ମୋଟା ଆଉ ଅଳସୁଆ ନହୁଅନ୍ତି ଦେଖିବୁ। ସେମାନେ ସ୍ମାର୍ଟ କୁକୁଡ଼ା ହେଲେ, ଦ୍ରୁତ ଗତିରେ ଦୌଡ଼ିବେ। ବହୁତ ଉପରକୁ ଉଡ଼ିଯାଇ ଆତ୍ମରକ୍ଷା କରିପାରିବେ। ତୋ ଛୁଆମାନଙ୍କୁ କହିଦେବୁ, ସେମାନେ ସମସ୍ତଙ୍କୁ ବିଶ୍ୱାସ କରିବେ ସତ, କିନ୍ତୁ କାହାରିକୁ ଅତି ବିଶ୍ୱାସ କରିବେ ନାହିଁ। ସତର୍କ ରହିଲେ, ବିପଦରୁ ଖସି ଯାଇହୁଏ। କାହାରିକୁ ଭୟକରି ଘରଛାଡ଼ି ଚାଲିଗଲେ, ସମସ୍ୟାର ସମାଧାନ ହୁଏନାହିଁ। ସବୁ ପ୍ରତିକୂଳ ପରିସ୍ଥିତିରେ ଆମକୁ ଚଳିବାକୁ ପଡ଼ିବ।"

ମୟୂରରଜାର କଥା ପଦକ କୁକୁଡ଼ା ମନକୁ ପାଇଲା। ସେ ବସାକୁ ଫେରିଯାଇ ତା'ଛୁଆମାନଙ୍କୁ ସବୁକଥା କହିଦେଲା। ସେହିଦିନଠାରୁ କୁକୁଡ଼ାମାନେ ଜୋରରେ ଉପରକୁ ଉଡ଼ିବା ବି ଶିଖିଲେ। ଏବେ ବିଲୁଆ କି କଟାସ ତାଙ୍କୁ କେହି ଧରି ପାରୁନାହାନ୍ତି। ଚୁଇଁ ଚଢେଇ ସବୁଦିନ ତାଙ୍କୁ ଦେଖି ଭାରି ଖୁସିହୁଏ।





## ଡକ୍ଟର କୃତ୍ତିବାସ ନାୟକ

ଗ୍ରାମ : ଏକତଳା, ରାଜକନିକା, କେନ୍ଦ୍ରାପଡ଼ା
ଜନ୍ମ : ୦୨.୦୩.୧୯୫୫

ଶିଶୁ ସାହିତ୍ୟିକ ଭାବେ ବେଶ୍ ଜଣାଶୁଣା ଲେଖକ ଡକ୍ଟର ନାୟକ ସାହିତ୍ୟର ବିଭିନ୍ନ ବିଭବରେ କଲମ ଚଳାଇ ସଫଳତା ହାସଲ କରିଛନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ କଳାଭୂଷଣ ଉପାଧିପ୍ରାପ୍ତ ଲେଖକ "ଓଡ଼ିଆ ଶିଶୁଗଳ୍ପର ସ୍ୱରୂପ ଓ ବିକାଶ" ନିବନ୍ଧ ରଚନା କରିଛନ୍ତି । ତାଙ୍କର ୧୦ ଖଣ୍ଡ ଗୀତିକବିତା ପୁସ୍ତକ, ୩ ଖଣ୍ଡ ଉପନ୍ୟାସ ଓ ୫୦ ଖଣ୍ଡ ଶିଶୁ ସାହିତ୍ୟ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଛି । ୪ ଖଣ୍ଡ ଗଳ୍ପ ସଂକଳନ ଓ ବ୍ୟଙ୍ଗ ପୁସ୍ତକ ତଥା ବିଭିନ୍ନ ସୂଚନା ସାହିତ୍ୟ ପ୍ରକାଶିତ । ଅଦ୍ୟାପି ୧୭୨ ଖଣ୍ଡ ପୁସ୍ତକର ରଚୟିତା ଡକ୍ଟର ନାୟକ ଆକାଶବାଣୀ ଜୟପୁର କେନ୍ଦ୍ରରୁ ନିର୍ଦ୍ଦେଶକ ପଦବୀରୁ ଅବସର ନେଇ ଅରୁଣ ତରୁଣ ଶିଶୁ ସାହିତ୍ୟ ସଙ୍ଗଠନ ମାଧ୍ୟମରେ ଶିଶୁସାହିତ୍ୟର ବିକାଶରେ ବ୍ରତୀ ଅଛନ୍ତି । 'ସହଯୋଗୀ' ମାସିକ ପତ୍ରିକାର ପରିଚାଳନା ସମ୍ପାଦକ ଭାବେ କାର୍ଯ୍ୟରତ । ତିନି ଥର ଜାତୀୟ ସାହିତ୍ୟ ପୁରସ୍କାରପ୍ରାପ୍ତ ଡକ୍ଟର ନାୟକଙ୍କର ଏହା ହେଉଛି ୧୭୨ତମ ପୁସ୍ତକ ।

- ପ୍ରକାଶକ


ISBN-978-93-87968-36-3